ଦିଶି ଯାଉଥିଲ ପ୍ରକୃତରେ ଧରି
ସ୍ୱୟମ୍ଭୁଙ୍କ ପରି ଦ୍ୟୁତି ହେ । ୧୧ ।
ତୁମ୍ଭଙ୍କୁ ହରାଇ କାନ୍ଦଇ ସମିତି
କାନ୍ଦନ୍ତି ଶିକ୍ଷକ ଗଣେ ହେ
ଛାତ୍ର ଛାତ୍ରୀ ଶୋକ ଅତି ଅତିରେକ
ଆଘାତ ବାଜଇ ପ୍ରାଣେ ହେ । ୧୨ ।
ଦେଶ ପ୍ରତିନିଧି ରୂପେ ମଧ୍ୟ ଦେଶେ
ନ ଥିଲା ଊଣା ଆଦର ହେ
ତୁମ୍ଭ ଗଲା ଦିନୁଁ କହୁଛନ୍ତି ଲୋକ
ଗଲା ଚୋଲି ଖଡ଼ିଆର ହେ । ୧୩ ।
ତୁମରି ଗହଣେ ଦିନେ ଏ ସମିତି
ଦେଶେ ପକାଉଛି ହୁରି ହେ
ଅମିହ୍ରା କାଳର ମସିହା ଗୁଞ୍ଜିଲ
ନୁହଇ କି ବାହାଦୁରି ହେ । ୧୪ ।
ସୁନ୍ଦର ଉଉଲ ମୂର୍ତ୍ତି ସଉଷ୍ଟବ
ଗଉର ବରନ କାନ୍ତି ହେ
ଆଜାନୁ ଲମ୍ବିତ ଥିଲା ଭୁଜବେନି
ବଶାଳ ବସ୍ତୀର୍ଣ୍ଣ ଛାତି ହେ । ୧୫ ।
ରୂପେ ଗୁଣେ ଥିଲ ତୁମ୍ଭେ ସମସରି
ଦୀର୍ଘ କାଳ ତୁଙ୍ଗ ମଥା ହେ
ଅରି ଡରି ଧରି ଘୁଞ୍ଚି ଯାଉଥିଲା
ଶୁଣି ସେ ଗମ୍ଭୀର କଥା ହେ । ୧୬ ।
କରି ନ ଥିଲେ ହେଁ ବେଶୀ ଲେଖା ଲେଖି
ଏ ଖଡ଼ିଆଳ କୁସୁମ ହେ

ଉଜ୍ଜଳ ବାମୀଙ୍କି ଦେଉଛି ଚେତାଇ
ସଉଜନ୍ୟ ଶୀଳ ଗୁଣ ହେ । ୧୭ ।
କେଣେ ଗଲ ସଖା ନ ଦେଲ ତ ଦେଖା
ମରୁଅଛୁଁ ଗୁଣ ଗୁଣି ହେ
ଚପେଇଣ ନିତି କାନ୍ଦଇ ଏମିତି
କରିଗଲ ଚୋଲ ରଣୀ ହେ । ୧୮ ।

✱✱

## ସ୍ୱପ୍ନ ସୁନ୍ଦରୀ

ବିଶ୍ୱନାଥ ପାଇକରାୟ

ନିଦ୍ରାଦେବୀର କୋଳ ଆଶ୍ରଇ ଯେବେ ନର
ସପନରଣୀ ! ସୃଜୁ ସୁଖ ଦୁଃଖ ଦୁନ୍ଦର ।
କରମ କ୍ଲାନ୍ତ ଦେହ ବଳ ଧାନର ପାଇଁ
ଘୋର ନିଶୀଥେ ନର ପଡଇ ଶେପେ ଯାଇ ।
ଅଚଳ ଅଙ୍ଗ ରଜ ଅବଶ ପ୍ରତି ଅଙ୍ଗ
କରନ୍ତ ଅନୁଭବ ତୋହର ସବୁ ରଙ୍ଗ ।
ମିଛକୁ ସତ ପୁଣି ସତକୁ ମିଛ କରି
ରଖୁ ମାନସ ପୁରେ ମାୟା ସ୍ୱପ୍ନ ସୁନ୍ଦରୀ ।
କେତେ ଯେ ଚିତ୍ର ରଜ ଛାୟା ବାଜର ଭତ
ଗଢୁ ତୁ ପଳକରେ ଚଳଚତ୍ର ଜଗତ ।
ହସାଉ କନ୍ଦାଉ ବା କ୍ଷଣକେ ବହୁଦୂରେ
ଟାଣୁ ତୁ ସ୍ୱପ୍ନରଣୀ ମନର ମାୟା ପୁରେ ।

ଉତ୍ତୁଙ୍ଗ ଗିରିଶିଖୁ ଅଣୁ ସାଗର ତଳେ
ଉଡାଇ ଆକାଶେ ବା ଫିଙ୍ଗୁ ତୁ ରସାତଳେ ।
ସରଗ ନରକର କାନ୍ତ ବା ଭୀମ ଛବି
ନର ମନ ମନ୍ଦରେ ପାରଇ ଅନୁଭବ ।
ସୃଷ୍ଟି ନିର୍ଦ୍ଧିତ ନର ସୁଖ ବା ଦୁଃଖ ସୀମା
ଧନ୍ୟ ସ୍ୱପ୍ନ ସୁନ୍ଦରୀ ଧନ୍ୟ ତୋର ମହିମା ।

## ପରିବର୍ତ୍ତନଶୀଳ ଜଗତ

– ସ୍ୱର୍ଗତ ବୈକୁଣ୍ଠନାଥ ଦଣ୍ଡହେନା

ଶୂନ୍ୟ ଶୂନ୍ୟ ଏ ଥିଲାଟି ମହାଶୂନ୍ୟ ।
ଶୂନ୍ୟରୁଟି ପବନ ହୋଇଛି ଜନ୍ମ ॥
ପବନରୁ ନାଦ, ନାଦରୁ ଓଁକାର ।
ଓଁକାର ମୂଳ ବୀଜ ଅଟେ ସଂସାର ॥
ଅଣାକାର ପୁରୁଷ ଓଁକାରୁ ରୂପ ।
ଅନନ୍ତ ନାମ ତାଙ୍କ ଅଟେ ଅଲକ୍ଷ ॥
ବ୍ରହ୍ମା ବିଷ୍ଣୁ ଶିବ ହୋଇଲେ ତା ଠୁଁ ।
ସୃଷ୍ଟି ପାଳନ ଲୟ ରଚନେ ସେହୁ ॥
ଛପନ କୋଟି ଜୀବ କଲେକ ଜାତ ।
ଚଉରାଶୀ ଯୋନିରେ କରି ଦୀପିତ ॥
ନାଗ ନର ଗନ୍ଧର୍ବ କିନ୍ନର ଯକ୍ଷ ।
ସୁର ଅସୁର ଆଡ ଚଉଦ ଲୋକ ॥

ସୁବର୍ଣ୍ଣେ ନାନା ବର୍ଣ୍ଣ ଯେସନ୍ତେଳଙ୍କାର ।
ଏକ ବ୍ରହ୍ମରୁ ଜାତ ଅଟେ ନିକର ॥
ଚନ୍ଦ୍ର ସୂର୍ଯ୍ୟ କିରଣ ସେ ଦିବାରାତି ।
ଚିର ଅଚର ବେନି ବର୍ଣ୍ଣରେ ଜ୍ୟୋତି ॥
ବରଷା ଗ୍ରୀଷ୍ମ ଶୀତ ଯେ ଆତଯାତ ।
ଚଳାଚଳ ଶୟଳ ସମସ୍ତ କୁ ତ ॥
ସତ୍ୟ ଦ୍ୱାପର ତ୍ରେତା କଳିଯୁଗକୁ ।
ଗ୍ଭରି ପ୍ରକାରେ ଭେଟ କରୁଛି ବପୁ ॥
ଆଦ୍ୟ ଯୁଗରେ ତପଚଳ ବିହିତ ।
ନିର୍ବିକାର ଅହିଂସା ସତ୍ୟରେ ରତ ॥
ଲକ୍ଷ ବରଷ ଆୟୁ ଅଲକ୍ଷ ବଳ ।
ବ୍ରହ୍ମରେ ଥାଇ ପ୍ରାଣ ଧର୍ମ ସମ୍ବଳ ॥
ଧର୍ମବୃ-ପାପ-ଭୟ ହୋଇଲେ କ୍ଷୟ ।
ଗ୍ଭରି ଯୁଗକୁ ଏହା ହୋଇଛି ଥୟ ॥
ସତ୍ୟ ଯୁଗରେ ଦୈତ୍ୟେନ୍ଦ୍ର ହିରଣ୍ୟ ।
ଜାତ ଜଗତ ପାତ କଲ୍ପ ପୂରଣ ॥
ନରସିଂହ ରୂପରେ ବୁକୁ ବିଦାରି ।
ବରାହ ରୂପେ ହିରଣାକ୍ଷକୁ ଚିରି ॥
ଦନ୍ତରେ ପୃଥ୍ୱୀ କି ସେ ଟେକିଲେ ହରି ।
ହରିଲେ ଦୈତ୍ୟବଳ ସମସ୍ତ ଶିରୀ ॥
ଦଶ ସହସ୍ର ବର୍ଷ ତ୍ରେତାରେ ଭୋଗ ।
ଅସ୍ଥିରେ ଥାଇ ପ୍ରାଣ ଅଚଳ ଯୋଗ ॥
ମନ୍ତ୍ର ବଳରେ ଧନୁର୍ବିଦ୍ୟା ସୃଜନ ।

ପେଶିଲା ଶବ ଲେଉଟଇ ପୁଣ ॥
ଗିରି ବୃକ୍ଷକୁ ନେଇ ପିଟନ୍ତି ଏକେ ।
ଧରଣୀ ଧସିଯାଏ ବଳ ସମୁଖେ ॥
ମାଳ ଯୁଦ୍ଧରେ ବୀରେ ଅତି ପ୍ରଚଣ୍ଡ ।
କରିଣ ଦାନ୍ତ କିଟି ସେ ମସିଗୁଣ୍ଡା ॥
ରାବଣ ନାମେ ଥିଲା ବଣ୍ଣିବା ସୁତ ।
ମହା ପ୍ରତାପୀ ବଳବନ୍ତ ଗରିଷ୍ଠ ॥
ହରିଲା ରାମନାରୀ ସୀତାଙ୍କୁ ଯେଣୁ ।
ରାବଣେ ସହୋଦରେ ମରିଲେ ତେଣୁ ॥
ଦ୍ୱାପରରେ ଦ୍ୱିପାଦ ସତ୍ୟ ବିଜୟେ ।
ସହସ୍ର ବର୍ଷ ଆୟୁ ଧର୍ମ ବିଶେଷେ ॥
ରଥି ପଦାତି ଗଜ ଅଶ୍ୱରେ ରଣ ।
ମାଳବନ୍ଧ କମାଣେ ପେଷନ୍ତି ବାଣ ॥
ଅସୁର ବଳ ଦର୍ପ ହୋଇ ସବଳ ।
ନାଶିଲେ କେତେ ସେ ଭୁବନ ମଣ୍ଡଳ ॥
ଦନୁଜ ଦଳନରେ ହୋଇଲେ ଜାତ ।
କୃଷ୍ଣ ବଧିଲେ କଂସ କେଶୀ ଦଇତ ॥
କୁରୁବଳ ସଂହାରି ପାଣ୍ଡବ ହିତେ ।
ଜାଣଇ ସକଳ ସେ ଜଗତ ଯେତେ ॥
କଳି ଯୁଗରେ ବଶାଶତ ବରଷ ।
ଧରମ ହୀନ ଯୋଗୁଁ ଅଳ୍ପ ଆୟୁଷ ॥
ଯନ୍ତ୍ର ଚଳନେ ହେବେ ପ୍ରବୀଣ ନର ।
ଜାହାଜ ରେଳ ଆଦ ଚଳେ ମୋଟର ॥

ମିଶନ ଗଞ୍ଜ ଗୋଳା ବୋମା ବାରୁଦ ।
ସଂହାର କରନ୍ତ ସେ ନାହିଁ ବିଷାଦ ।।
ଦିନକୁ ଦିନ ଏହି ମତେ ଜଗତେ ।
ବିଚିତ୍ର ଖେଳା ଲୀଳା କରେ ଗୁପତେ ।।
ଥିଲେ କ୍ଷତ୍ରିୟ ବୀର ପ୍ରତାପୀ ରଜା ।
ଧମଷ୍ଠ ନର ପାଦେ କରନ୍ତ ପୂଜା ।।
ଭରତ ଯୋଗୁଁ ନାମ ହେଲା ଭରତ ।
ଶାସନ କରିଥିଲେ ହୋଇଣ କ୍ଷାନ୍ତ ।।
ଚଉରି ଦିଗକୁ ଜୟ କରି ଥିବାରୁ ।
ଚତୁର୍ଭୁଜ ଚୌହାନ ନାମ ପ୍ରସରୁ ।।
ଥିଲେ ଦଲୀପ ଅଧୀଶ୍ୱର ସେ ହୋଇ ।
କିଛି କାଳ ରଜତ୍ୱ କଲେକ ତହିଁ ।।
ଯବନ ଜାତି ତହୁଁ ଭରତେ ଆସି ।
ଘେନିଲେ କେତେ ରଜା ସଂଗ୍ରାମେ ପଶି ।।
ନିତି ଅନିତି ବଳ କରି ପ୍ରସାର ।
କଲେକ କେତେ ରଜା ସେ ଛୁରଛୁର ।।
ତହୁଁ ସେ ଗୋର ତୋଖ ସୁଖେ ବହରି ।
ବ୍ୟବସାୟୀରେ ଆସିଥିଲେ ଏ ପୁରି ।।
କରିଣ ଛେଦ ଭେଦ ଅନେକ କୂଟ ।
ନେଲେ ସମସ୍ତ ରାଜା ଶିରୀ ମୁକୁଟ ।।
ଛଳ ବଳ କଳ କୌଶଳରେ ପୂର୍ଣ୍ଣ ।
ପାଳିସି ଜାଣଇ ସେ ଅନେକ ବର୍ଣ୍ଣ ।।
ଭରତ ମାତା ତହୁଁ ହୋଇ କୁପିତ ।
ବୋଇଲେ କେତେ ଶୋଉଅଛରେ ପୁତ ।।

ମହାତ୍ମାଗାନ୍ଧୀଙ୍କର ହୃଦରେ ବସି ।
ବାକ୍ୟଯୁଦ୍ଧ ପ୍ରାରମ୍ଭ କଲେକ ଆସି ॥
କେତେକ ଗୁଳୀ ଖଣ୍ଡା ନଢର ଖାନା ।
ସହିଲେ ମହାକଷ୍ଟ ହୋଇ ସୁମନା ॥
ଅନେକ ଦିନ ଏହି ପରାମର୍ଶରେ ।
ଘେନିଲେ ରାଜ୍ୟ ଡୋର ନିଜ ହସ୍ତରେ ॥
ଜାତ ଏ ଧରା ତଳେ ହୋଇ ସ୍ୱୟୁତ୍ତ୍ୱ ।
କଲେ ଭରତ ଯାକ ସର୍ବ ସ୍ୱତନ୍ତ୍ର ॥
ଆଜି ଜା ଦେଖୁ ଅଛି କାଲି ତା ନାହିଁ ।
ଦନ ମାସ ବରଷ ଯାଉଛି ବହି ॥
ପରିବର୍ତ୍ତନଶୀଳ ଏହି ଜଗତ ।
ଲେଖିବାକୁ କେ ଅବା ହେବ ସମର୍ଥ ॥

*ଖଡଆଳ ସାହିତ୍ୟ ସମିତିର ତା: ୨୬-୧-୪୮ ଅଧିବେଶନରେ ପଠିତ ।

## ଜୀବନ ପ୍ରବାହ

-ସ୍ୱର୍ଗତ ଆନନ୍ଦ ମୋହନ ବାରିକ

ଜନନୀ ଗର୍ଭରୁ ତନୟ ଯେବେ ଜାତ ହୁଏ
ସେତ ଓଁ ବ୍ରହ୍ମପଦ ମନ୍ତ୍ରକୁ ମନେ ଧ୍ୟାୟେ
ଚନ୍ଦ୍ରଙ୍କ ପରି ବଢ଼ଇ ।
କର୍ମ ଜ୍ଞାନ କର୍ତ୍ତାଙ୍କ ସଙ୍ଗେ ଜୀବନ ଗତି ହୋଇ । ୧ ।
ଚ୍ଛଳିଛି ଇଚ୍ଛା ପୋତକାର ବୈକଣ୍ଠ ସାଗରେ

ଲିପ୍‌ସା ଗତି ପଥେ ଜୀବନ ଗତି ଯେ ବେଗରେ
ରହି ଶୁଷ୍କ ଲପନରେ ।
ଶୋକାର୍ଣ୍ଣବେ ପଡ଼ କେ ଗିର କହି ନ ପାରେ । ୨ ।
ହିରଣ୍ୟ ଜୀବନ କାର ଦୁଷ୍ଟ ବାତ୍ୟା ଦୁଃଖରେ
ଘନରେ ତପନ ଯେ ଲପନ ସେ ମଳିନରେ
ଜୀବନ ଗତିକାର ସାର ।
ସାର ରସା କାରେ ଗାଢ଼ ବୁଝପଦର । ୩ ।
ଲୁଣିଆ ନୀର ଅବନୀର ଘନେ ମିଶେ ନଭେ
ନିର୍ମଳରେ ନୀର ନଭ ପୁଣି ବରଷେ ଭବେ
ବିଷେ ଭରା ଜୀବ(ନ) କାର ।
ସାଧୁ ସଙ୍ଗେ ସିନ୍ଧୁ ପାର କରିଯାଏ ଭଇର । ୪ ।
କେତ୍କୁ ବନର କଣ୍ଟକ ପଥରେ ରୁଲେ ହେଉ
ସେ ଜନ ଜୀବନ ନର୍କେ ବିପଦେ ଯାଏ ମଞ୍ଜି
ପ୍ରତିପାଦେ ନିତି କାଳ ।
ଧରି ଗୌରବେ ପକାଇବା ପାଇଁ ଇଚ୍ଛେ କାଳ । ୫ ।
ରଥ ସାରଥିର ସାର ପଥକୁ ନ ବୁଝଇ
ପାଣିର ଗାର ପ୍ରାଣ ଜୀବର କ୍ଷଣକର ପାଇ
ତରଙ୍ଗ ପରି ସମୟ ।
କାହାର ନାହିଁ କା'ରେ ଅପେକ୍ଷା କରେ ଆୟୁ କ୍ଷୟ । ୬।
ପୌରୁଷ ହୃଦୟ ସମ ମତି ଯାର ହେ ବୀର
ପରମ ତା ପଥ ସେହି ଜୀବନ ପରିଷ୍କାର
ବହ୍ନି ହିରଣ୍ୟ ଯେପରି ।
ଗୁପ୍ତ ପକ୍ଷୀ ଗୁଣରେ ବୁଳେ ଡ଼ିପୁରୀ ଗର୍ଭରୁ ବାହାରି ।୭।

  

ଶୂନ୍ୟରେ ଶୂନ୍ୟରେ ଦେଖନ୍ତ ଗୋଟି କେ ଗଢ଼ଛ
କେଉଁ ବିଜ୍ଞାଣୀ ଦେଖନ୍ତ ତୋୟ ଦେଇ ତୋଳନ୍ତି
ଜୀବ ପରମ ଚହିଁରେ ।
ସର୍ବ ଜୀବ ଜୀବ ପ୍ରବାହ ହୁଏ ମନ୍ଦରେ । ୮ ।
ସୁମନ ଦୁମନ ମନ ବିମନ ଜ୍ଞାନ ଶାନ୍ତ
ଗୋପଦ୍ୱାରେ ପଞ୍ଚ ମନ ପଚଶ ପ୍ରକୃତି
ବଧୂ ଇଙ୍ଗଳା ପିଙ୍ଗଳା ।
ବସିଛ ଷୋଳସସ୍ର ଗୋପ ସଖି ସ୍ୱର୍ଗ ନଳା । ୯ ।
ରାଧାକୃଷ୍ଣ ସୁଧାଂସୁ ପୁଷ୍ପ ଗଙ୍ଗା ରବି ବଟ
ବୃନ୍ଦାବତୀ ନାଡି ଓ ଋଷି ବେଦ ସବୁ ଯୋଟ
ସର୍ବ ଅଙ୍ଗ ସଙ୍ଗତରେ ।
ଓଲଟ ତରୁରେ ପ୍ରବେଶି ଅଛ ମିଶି ନୀରେ । ୧୦ ।
ନିଟର ଜଳାଶୟରେ ସାରସ ବସା ଅଛି
ଲକ୍ଷେ ଦୃଷ୍ଟ ତନୟ ସାଥ ହରିଣୀ ରହିଛ
ବ୍ୟାଘ୍ର ଦିଅଇ ଘୃତାନ୍ନ ।
ଜୀବନ ପ୍ରବାହ ଜୀବର ହର୍ଷେ ଋଳନ । ୧୧ ।
ଅଜ୍ଞାନରେ ମାୟାର୍ଣ୍ଣବେ କେହୁ ଅଛ ପଡ଼
ଜ୍ଞାନ ଥାଉ ଜ୍ଞାନ ଯାଉଛି ମାୟାରେ ବୁଡ଼
ତମ ମତ୍ତ ବାତ ।
ଅମ୍ବୁନିଧିରେ ପକାଇବା ପାଇଁ କିବା ମତ୍ତ । ୧୨।
କା (ର) ଷଟୁ ତରଣୀ ରଡ ଯେ ଅଗାଧ ଜଳରେ
ବାରିଧିର ବାରି ପଶୁଛି କାହାର ପୋତରେ
ରସାତଳରେ ଖଣ୍ଡର ।
ଆଡୁଲା ନ ପାଇ ବନଷ୍ଟ ଥରେ ସେ ସିନ୍ଧୁରେ । ୧୩ ।

ବର୍ଷାର ବାତେ ତରଣୀ ନୀରେ ସରିତେ ଭସେ
ଛିଦ୍ର ପାଇ କାଳ ପରାଣ ପୋତକୁ ନାଶେ
ରଜନୀ ଦବା ନ ଦଶେ ।
ଦଶ ଦିଶ ଶୂନ ତାପ ପଞ୍ଚ ତତ୍ତ୍ୱ ପଞ୍ଚ ମିଶେ । ୧୪ ।
ଧ୍ୟାୟି ଶ୍ରୀ ସୀତାକାନ୍ତ ପଦ ବାରିକାନନ୍ଦ ମୋହନ
ଚିତ୍ତବନ୍ଧେ ଭବେ ଜୀବନ ପ୍ରବାହ ତତ୍ତ୍ୱ ଜ୍ଞାନ
ହେ ପ୍ରଭୁ ଜାନକୀରମଣ ।
ଅଘ ନାଶି କରୁଣା କରିବେ ହୋଇ ସୁ ପ୍ରସନ୍ନ । ୧୫ ।

---

## ପ୍ରଦୀପ

ଲେଖିକା — ଲଳିତା

କେଉଁ ଶୁଭଲଗ୍ନେ କିଏ ଅମୃତ-କଳ୍ପନା ଧରି
ପ୍ରଦୀପ ଜାଳିଲା ଘନ ଅନ୍ଧକାର ପରେ
ଯାର କଳ୍ପନା ପ୍ରସୂତେ
ବାସ୍ତବ ଜ୍ୟୋତି୍ଲ୍ୟ ନେତ୍ରେ
ମାନବ ପରାଣେ ଫୁଟେ ଜ୍ଞାନ-କର୍ମ-ସତ୍ତ୍ୱା
ସତ୍ୟ ଶିବ ସୁନ୍ଦରର ପ୍ରତୀକ ପ୍ରଦୀପ ଶିଖା
ନିବିଡ ତମ ସଂସାର-ନଭେ ଧ୍ରୁବତାରା
କେଉଁ ଅସୀମ ଶରତ୍ତୁ ସସୀମ ମାନବ ପ୍ରାଣେ
ଢାଳି ଅଛି ଧୂଳା
ପଶୁତ୍ୱର କରିଅଛି ଶେଷ...... ... ....

ସୃଷ୍ଟି କୋଳେ ତୋଳିଅଛ
 ମାନବ କୀର୍ତ୍ତି ଅମର, ନିରସ, ସରସ । ୧ ।
ପ୍ରଦୀପ ତୋଳିଛ ଟେକ ସଭ୍ୟତା ସୌନ୍ଦର୍ଯ୍ୟ
ଅମୃତ ମାନବେ ଦେଇ ଅମୂଲ୍ୟ ବୈଦୂର୍ଯ୍ୟ
ଶୁଭଲଗ୍ନେ ଅଶୁଭକୁ ଠେଲି ଦେଇଦୂରେ
ରଚିଅଛି ନବସୃଷ୍ଟି ଅନ୍ତରେ ବାହାରେ
ଦେଇଅଛି ନବପ୍ରାଣ ତୋଳି ନବଗାନ
 ମରକୁ ଅମର କରି
 ସରକୁ ସରଗ ଧରି
ଯୁଗେ ଯୁଗେ ଦେଶକାଳ ପାତ୍ରେ ନୁହେଁ ଭିନ୍ନ
ଧନ୍ୟରେ ପ୍ରଦୀପ ଧନ୍ୟ ତୋ ଅମୃତ ପ୍ରାଣ । ୨ ।
ପ୍ରଦୀପ ଢାଳିଛ ପ୍ରାଣ ପ୍ରେୟସୀ ପରଶେ
ତ୍ୟାଗ ତୈଳେ ଗଢିଅଛି ଅମୃତ ଜୀବନେ
ଅପଥକୁ ପଥକରି ବାହିଅଛି ରଥ
ଅପଥରୁ ଦେଖାଇଛ ଅପରୂପ ପଥ
ରଜ୍ଜୁ ବଞ୍ଚାସିନୀ ପ୍ରାଣେ କନକ କଳ୍ପନା
ତୋଳିଅଛ ଗୃହେ ବନେ ପବିତ୍ର ସାୟାହ୍ନେ
 ଗୋଟିକରୁ କୋଟିଏର
 କୁଟୀରୁ ପ୍ରାସା ଚୂଳ
ଶାଶ୍ୱତ ମଙ୍ଗଳ ପ୍ରାଣେ ଦେଇଅଛ ଭରି
ଛିଦ୍ର ର ରମଣୀ ନୁହେଁ ବିଶ୍ୱମାତା ନାରୀ । ୩ ।
ଏ ପ୍ରଦୀପ ଉଡାଇଛି ଦେଶେ ବୈଜୟନ୍ତୀ
ଦେଇ ଅସୀମ ସାହାସ ବାହି ନବ ଯାତ୍ରୀ

ଅକୂପାର ସେ ପାରକୁ ଡାକିଅଛି ବୀରେ
ସୁନାର ବୋଇତ କେତେ ଭସାଇ କଲ୍ଲୋଳେ
ଗଢ଼ ଅଛୁ ତାଡ଼ ଅର୍କ ବିସ୍ତାରି ସାମ୍ରାଜ୍ୟ
ପ୍ରସ୍ତରିଛି କର୍ମବାଣୀ ମାନବ ସୌନ୍ଦର୍ଯ୍ୟ
ଶିଖାଇଛି ଭେଦଗଣା
ଦେଖାଇଛି ରାଜ୍ୟଦିଣା
ହିଂସା ପ୍ରଶୋଷିତ ତରବାରୀ (ଯହିଁ) ମାରେ ଧାର
ପ୍ରେମର ପ୍ରଦୀପ ସେଠି ତୋଳେ ସମକାଳ । ୪ ।
ଧନ୍ୟରେ ପ୍ରଦୀପ ଧନ୍ୟ ଅସୀମ ଶକତି
ଭୁ ଭରତେ ଉଡୁ ତୋର ଆଲୋକେ ବୈଜନ୍ତୀ
ଅନ୍ଧକାର ଯାଉ ଦୂରେ
ଆସୁ ନବାଲୋକ ଧରେ
ଦେଖାଉ ଭାରତ ପୂର୍ବ ଭରତ ଶକତି
ତ୍ୟାଗ ସତ୍ୟ ଅହିଂସାର ଉଡୁ ବୈଜୟନ୍ତୀ
ଅସ୍ତମୀତ ପରଚୀ ପ୍ରାଙ୍ଗଣେ
ଦେଖୁ ପ୍ରାଚୀ ଧ୍ରୁବତାର-ଭରତ-ଭୁବନେ
ସୁରପୁରୁ ଦେବ କନ୍ୟାଗଣ
ପ୍ରଦୀପ ତୋରଣ କରେ
ବନ୍ଦାଅନ୍ତୁ ଯୁଗ ପ୍ରାତେଃ ଜନ
ଫୁଟୁ ମୁଖେ ନବ ଜ୍ୟୋତି ରେଖା
ସମରାଜ୍ୟ ଆସୁ ଭବେ
'ପ୍ରଦୀପ' ତୁ ଟେକ ତୋର ଶିଖା । ୫ ।

ଖଡ଼ିଆଳ ସାହିତ୍ୟ ସମିତିର ୪ର୍ଥ ଅଧିବେଶନରେ ପଠିତ
ତା ୧୮ । ୧୦ । ୪୭ ଦିନ ।

# ପ୍ରଦୀପ

ଲେଖକ – ବନଫୁଲ

ଉତ୍କଳବାଳା ଜାଳେ ଯେ ପ୍ରଦୀପ
ମୁକ୍ତ ସରଳ ମନେ
କାହାର ଆଦେଶେ କେଉଁ ଉପଦେଶେ
ଜାଳେ ଏ ପୂର୍ଣ୍ଣିମା ଦିନେ ?
ପ୍ରିୟେ ସଂଶୟ ଫିଟାଇ କହ
କାର୍ତ୍ତିକ ପ୍ରଦୀପ ଉଜ୍ଜ୍ୱଳ ପ୍ରାଙ୍ଗଣେ ଆଣେ କି ମଙ୍ଗଳ କୋହ । ୧ ।
ଶୁଣିଥିଲି ଥରେ ମା'ଠାରୁ ଦିନେ
ସାଧବ ବିଦେଶ ଯାତ୍ରା
ଲକ୍ଷ ବୋଇତ ବାହିଥିଲା ସେଥୁ
ଅଜଣା ଆଜ ସେ କଥା
ବଙ୍ଗୋପସାଗର ବକ୍ଷ –
ମଣ୍ଡିତ କରି ବୋଇତ ଚଳାଏ, ପୂର୍ଣ୍ଣତା ତାର ଲକ୍ଷ୍ୟ । ୨ ।
ଊର୍ମି ବିକ୍ଷୋଭିତ ମହୋଦଧି ବକ୍ଷ
ଶାନ୍ତ ମୂରତି ଧରେ
ଘୋର ବରଷାର ରୁଦ୍ର ମୂରତି
ଆତଙ୍କ ନ ଦିଏ ତା'ରେ
ଅନୁକୂଳ ବାତ୍ୟା ବହି
ସଧୀରେ ବୋଇତ ସୁନୀଳ ସାଗରେ ସୁଦୂରରେ ନିଏ ଉଠାଇ । ୩ ।
ତେଣୁ ଏ ପୂର୍ଣ୍ଣମୀ ବିଦାୟ ଯାମିନୀ
ପ୍ରେମ ମନ୍ଦାକିନୀ ରୂପ

ଉତ୍କଳବାଳା ଅନୁକୂଳ ବାତେ
ଲଗାଇ ଆକାଶେ ଦୀପ
ଉତ୍କଳ ଗଗନ ଶଶି
ସହାସ୍ୟ ବଦନେ ଉଭେଇ ଯାଆନ୍ତ ଶୁଭ ଆଶିଷ ବରଷି । ୪ ।

ଏହି ପ୍ରିୟ ସେହି ବୋଇତ ବନ୍ଦାଣ
ସୂଚନା ଦଏ ଆଣି
ଯେ ଦିନ ଫେରିଲା ଉତ୍କଳ ବାଳା
ତା ପ୍ରିୟେ ଦେଇ ମେଲାଣି
ତାର ଉତ୍ଫୁଲ୍ଲ ଝଗପ୍ରାଣ
ଗୋପନ କରନ୍ତେ ଉଙ୍କ ପଡୁଥିଲା ସରସ କୋମଳ ମନ । ୫ ।
ଉତ୍କଳର ଇତି ଗୌରବମୟ
ସ୍ମୃତି ଏ ପ୍ରଦୀପ ପ୍ରିୟ
ଉତ୍କଳ ବୀର ସ୍ୱାଗତ କରେ
ଆନନ୍ଦେ ଢଳାଇ ଦଅ
ଏହି ଜାତିର ମୁକତି ଶିଖା
ଦେଉ ପ୍ରେରଣା ଶକ୍ତି ସାହସ ବୀରତ୍ୱର ଗୁରୁଦୀକ୍ଷା । ୬ ।

ଯଶସ୍ୱିନୀ ମାତା ବୀର ପ୍ରସବନୀ
ଆତ୍ତରେ ଆକୁଳ ପ୍ରାଣେ
ଆର୍ଦ୍ର ନୟନେ ଚହେଁ ସ୍ୱର୍ଗ ପଥେ
ଝାଉଁଳା ଉଦାସ ମନେ
ଜାଳ ଏ ପ୍ରଦୀପ ରତ୍ନ
ମାଗେ ଆଶିଷ, ଜାଗୁ ଉତ୍କଳ (ତାର) ତନ୍ଦ୍ରା ଯାଉରେ ଉଡ଼ । ୭ ।

ଦେବତା –

ତୁମରି ଜ୍ୟୋତି ପରଶ ପାଇ
ପଙ୍ଗୁ ଲଙ୍ଘିପାରେ ଗିରି
ତୁମରି ଜ୍ୟୋତି ମାନବେ ଦିଏ
ତେଜ ବୀର୍ଯ୍ୟ ଯଶଃ ଶ୍ରୀରି
ସେହି ଜ୍ୟୋତିର କ୍ଷୀଣ ପ୍ରଦୀପ
ଜଳାଏ ଆଜ ଉତ୍କଳବାଳା ଫେଡ ତା ଅନ୍ତର କୋହ । ୮ ।

ଖଡିଆଳ ସାହିତ୍ୟ ସମିତିର ୪ର୍ଥ ଅଧିବେଶନ ତା ୧୮।୧୦।୪୭ରେ ପଠିତ ।

## * ସୌନ୍ଦର୍ଯ୍ୟ *

-ଶ୍ରୀ ହରି ପ୍ରସାଦ ହୋତା

ସବଗର କଳପନା ନୟନେ ଫୁଟାଇ
ନବରୂପେ ଅମର୍ତ୍ତ୍ୟ-ରୂପସୀ
ଉଭରୁଅ ମୋ ପୁରତେ ହସି ହସି ନିତି
ଆଗୋ ମୋର ସୌନ୍ଦର୍ଯ୍ୟ ଉର୍ବଶୀ । ୧ ।
ନେତ୍ରେ ମୋର ଜାଗେ ମୋହ ସ୍ୱପ୍ନେ ମାଦକତା
ଅଙ୍ଗେ ଅଙ୍ଗେ ରୋମାଞ୍ଚ ପୁଲକେ
ବହ୍ନ୍ୟାତ ସ୍ୱପନ ବକ୍ଷେ ରହି ରହି ଫୁଟେ
ପ୍ରାଣେ ପ୍ରାଣେ ଆଲୋକ ଝଲକେ । ୨ ।
ରକ୍ତିମ ବାରୁଣୀ କୋଳେ ଅସ୍ତୋନ୍ମୁଖ ରବି
ମେଘଧାରେ, ଲତାଶିରେ ହସେ

ତୁମରି ପୂଜାରୀ ରାଣୀ ! କବ ମୁହିଁ ଦୀନ ,
ମୁଗଧ ନେତ୍ରେ ରହିଁ ରହିଁ ରସେ । ୩ ।
ଶରତେ ରଜତ ହାସେ ଝଲକେ ଜୋଚ୍ଛନା
ଫୁଲ ଫୁଟେ ଗନ୍ଧବହ ଛୁଟେ
ବାସନ୍ତୀ ପ୍ରଦୋଷେ ଲୋଟେ ସରଗ ସୁଷମା
ପ୍ରାଣେ ଫୁଲ ଅଭିସାର ଉଠେ । ୪ ।
ଆଷାଢ଼ର ପ୍ରାବୃଟରେ ମୁର୍ଚ୍ଛେ ମୋର ଝରେ
ରାଣୀ ଭବ୍ୟ ତୁମର ସଂଗୀତ
ବିଜୁଳୀ ଝଲକେ ଖେଳେ ଅଧରେ ମୋ ହସ
ବକ୍ଷେ ତବ ରୂପ ସ୍ୱପ୍ନାୟିତ । ୫ ।
ଯୁବତୀର ରକ୍ତାଧରେ, ବିଦ୍ୟୁତ ନୟନେ
ଘନ-ପୀନ ଉରଜ ସମ୍ଭାରେ
ଚଳା ଲୋକ ମଧୁହାସେ ତୁମରି ନିବାସ,
ବିଶ୍ୱଯୁକ୍ତ ତୁମରି ବିଭବେ । ୬ ।
ଧନୀ ଆଉ ଦରିଦ୍ରରେ ନାହିଁ ଭେଦା ଭେଦ
ସାମ୍ୟନୀତି ତୁମରି ରଚନା
ଅୟି ! ମୋର କଳ୍ପନା ଉର୍ବଶୀ ସୌନ୍ଦର୍ଯ୍ୟ ରୂପସୀ
ଘେନ ମୋର ପ୍ରାଣର ଅର୍ଚ୍ଚନା । ୭ ।





# * ସ୍ୱପ୍ନ *

ଶ୍ରୀକାନ୍ତ ଧଳ

କନକ କିରଣ ରବ
ଯାଏ ଗୋ ହରଷେ ଡୁବ
ପତୀତ ଉତ୍ସାତେ ପଙ୍କ ଖେଳ
ସୁନୀଳ ଗଗନ ବୁକେ
ସନ୍ଧ୍ୟା ବଦନ ଶେଷେ
ଧୀରେ ତଏ ଦେଖା ଶଶିହସି
ମଦୀର ହିଲ୍ଲୋଳ ତାଳେ
ସୁରଭୀ ମଲ୍ଲୀକା ଖେଳେ
ସଂଗୀତ ମୂର୍ଚ୍ଛନା ଭେଳେ
ତରୁ ଶୀଖେ ଫୁଲ ଦୋଳେ
ଭୁବନ ମୋହିନୀ ଦେବୀ, ଧରାଧାମେ ଆସ ହସି । ୧ ।

ବାତାୟନ ପଥେ ଚନ୍ଦ
କରେ ଗୋ ଆଲୋକେ ରଙ୍ଗ
ପ୍ରେମ ତନ୍ଦ୍ରା କ୍ଳିଷ୍ଟ କିଶୋର କପାଳେ
ଚନ୍ଦନ ପ୍ରଲେପ ଶଏ ଲେପି
ଆଖି କୋଣେ ହସି ଗୋ ସରସି,
ତୁମେ ଗୋ ଆସ ମାନସି
ମଞ୍ଜୁ ନୁପୁର ପଦ ପଦେ
ଚନ୍ଦ୍ରକା ଚଞ୍ଚଳ ତବ
ପୁଲକାଏ ମମ ଅପଘନେ

ପ୍ରେମର ଜାହ୍ନବୀ ଶୀତ ବାରି ସିଂଚି କି ଗୋ
ମମ ରିକ୍ତ ପ୍ରାଣେ ତନ୍ଦ୍ରା ପଥେ ଆସି ? । ୨ ।

ଆଣ ତୁମେ ରୋମାଞ୍ଚ ସୁନ୍ଦରୀ
ତୁମେ ଇ ଗୋ ମୂକ ଜଡପ୍ରାଣେ
ପ୍ରେମର ମୂର୍ଚ୍ଛନା ଦିଅ ଢାଳ
ଉଲୁସାଇ ଚନ୍ଦ୍ର ପଉବନ
ଅବଗାହେ କିଶୋର ମୁଁ ସଖି
ତବ ପ୍ରେମ ସଲିଳେ ବଳହି
ଦେଖି ମୋର ସରସିଜ ମୁଖି
ବହୁଳ ମୁଁ ସତ୍ୟେ ତୁମ ଲାଗି
ତୁମେ ଇ ଗୋ ପରଣ ଇପସିତ
ତୁମେ ଇ ଗୋ ରଣୀହୃଦ ଶଶି । ୩ ।

ଜାଣିଛ କି ତୁମେ ?
ଜାଳଥିଲି ଜାଗର ଗୋ ବସି
ଯାହା ଲାଗି କେତେ ଅହର୍ନିଶି
ଆଶା ମୋର ଆଶାରେ ରହିଛି
ଦଗ୍ଧପ୍ରାଣ ଭ୍ରାନ୍ତ ମୁଁ ଗୋ ଭରମି ମରିଛି
ଆସ ମୋର ଆଶା କଳ୍ପଲତା, ସ୍ୱର୍ଗ ତପସ୍ୱିନୀ
ନ ଥିଲ ଗୋ ପାଇ ଏତେ ଦିନେ
ମାନସି ଗୋ ଆସ ସାଥି ସ୍ୱପ୍ନ
ଜୀବନର ମଧୁ ଅଭିସାରେ ନ ପାହୁ ଗୋ ନ ପାହୁ ଯାମିନୀ । ୪ ।

ହେଲେ:- ଆସୁ ଦିନ ପରେ ରତି
ଯାଉ ଦୂରେ ଯାଉ ଧୀରେ ବତି

ବାହାର ଦୁନିଆ ଯାଉ ଭୁଲି
ପ୍ରେମେ ଭୁଲି ତୁମ ପାଶେ ଥିବି
ସ୍ୱପ୍ନେ ! ତୁମେ ହୁଅ ଚୀର ସାଥି
ଜୀବନରେ ଏ ଅଙ୍ଗ ପରଶ
ବୋଳିଦିଏ ତୁମରି ତନୁରେ
ଜଡଯାଉ ପରଶେ ପରଶ
ହେଉ ଶୁଭ ଏ ମିଳନ ତିଥି ।୫।

ଯାଅ ଦୂରେ ଦିଗ୍‌ବଳୟ ଶଶି
ହେମ ପ୍ରଭ ଯାଉ ତୁମ୍ ଲେପି
ଏ ପିପାସୀ ଅଧର ପରଶେ
ଫୁଟି ଉଠୁ ତବ ଶୋଭରାଶି
ନ ହୁଅ ଗୋ ନ ହୁଅ ଚଞ୍ଚଳା
ନ ଯାଅ ଗୋ ମୋର ସ୍ୱପ୍ନପ୍ରିୟା
ଜୀବନରେ ନ ହୋଇ ଚପଳା
ଜଡରହ ଆଗୋ ସ୍ୱପ୍ନବାଳା
ଚିରଦିନ ରହେ ମୁଁ ବିକଳି
ତବ ପ୍ରେମେ ଅଧୀର ପ୍ରିୟସି ।୬।



# ଯୁଗଳ ଭଗିନୀ

ଶ୍ରୀ ଶିବ ନାରାୟଣ ଦେବ

ଦିନର ଯାବତ କାର୍ଯ୍ୟ କରି ଶେଷ,
ଅସ୍ତାଚଳେ ରବି ହେଲେ ପରବେଶ । ୧ ।
ପଶ୍ଚିମ ଗଗନେ ଉଠେ ଅରୁଣିମା,
କି ସେ ଦିବା ସତୀ ନିବାରିଣୀ ସୀମା । ୨ ।
ଅବା ଦିନମଣି ବିରହେ ଦିବସ,
ମାନ ଭରେ ମୁଖ କରିଛି ସରସ । ୩ ।
ରବି ରଥଚକ୍ର ଘାତ ଜାତ ଧୂଳି,
ଉଡ଼ାଇ କି ଅବା ଗଗନ ଉଚ୍ଛୁଳି । ୪ ।
କିବା ରୁଣ୍ଡ ହୋଇ ଅଷ୍ଟ ଦିଗପାଳ,
ହରଷ ରଭସେ ଖେଳନ୍ତି ଗୁଲାଲ । ୫ ।
ବୀର ଧନଞ୍ଜୟ ସଙ୍ଗେ ହୁତାଶନ,
କରନ୍ତି କି ଅବା ଖାଣ୍ଡବ ଦହନ । ୬ ।
ଦେବ ଚିତ୍ରକରେ ବାସବ ହୁକୁମେ;
ବୈଜୟନ୍ତ ଅବା ବୋଳିଛି କୁଙ୍କୁମେ । ୭ ।
ମନ୍ଦାର-ମାଳିନୀ ବନ ଦେବୀଙ୍କର,
ମଥାମଣି ଅବା ଝଟକେ ସୁନ୍ଦର । ୮ ।
ବାରିନିଧି ଅବା ଭୀମ ପ୍ରଭଞ୍ଜନେ,
ପ୍ରବାଳ ଲହରୀ ଟେକିଛି ଗଗନେ । ୯ ।
ଇନ୍ଦ୍ର ଅଭିଷେକ ଲଗି ଦେବ ସଭା,
ରକ୍ତ ଚନ୍ଦ୍ରାତପ ଟାଣିଛନ୍ତି ଅବା । ୧୦ ।

ଖଗଙ୍ଗନାମାନେ ଅତୀବ ଉଲ୍ଲାସେ,
ଦେହଯାକ ମଣ୍ଡି କୁସୁମୀ ସୁବାସେ । ୧୧ ।
ରତ୍ରୀ ଦେବୀଙ୍କର ନିରଜନା ପାଇଁ,
ଦିଗ୍‌ବିଦଗୁଁ ଅବା ଆସିଛନ୍ତି ଧାଇଁ । ୧୨ ।
ଦିବା ଅଭିନୟ ଶେଷ ହେଲା କ୍ଷଣ,
ରଙ୍ଗ ଯବନିକା ହେଲା କି ପତନ । ୧୩ ।
ହେମ ସିଂହାସନେ ଗୁଲାବୀ ବସନେ,
ବିଜେ କଲେ ସନ୍ଧ୍ୟା ଦେବୀ ତୋଷମନେ । ୧୪।
ତପନ ତାପରୁ ତରିଲା ଭୁବନ,
ଶୀତଳ ପବନେ ଉଲ୍ଲସିଲା ମନ । ୧୫ ।
ମନ୍ଦ ଗନ୍ଧବାହ ଶୀତଳ ତରଙ୍ଗେ,
ନୀଡ ଅଭିମୁଖେ ଉଡଲେ ବିହଙ୍ଗେ । ୧୬ ।
ଡାଳେ ଡାଳେ ବସି କପୋତ ଦମ୍ପତି,
କେ ଜାଣି ନିରବେ ମନେ କି ଭାବନ୍ତି । ୧୭ ।
ଖର୍ଜ୍ଜୁର କାନନେ ଜୁଣ୍ଟ ହୋଇ କାକେ
ଗାଉଛନ୍ତି ବିଷ୍ଣୁ ଗୁଣ ଏକ ବାକ୍ୟେ । ୧୮ ।
ଶୁଭୁଛି ଯେସନ ଯବନ ସମାଜ,
ସନ୍ଧ୍ୟା ସମୟରେ ପଢନ୍ତି ନମାଜ । ୧୯ ।
ସରୋବରୁଁ ତେଜି ଆପଣା ଜୀବିକ,
ଯାଉଛନ୍ତି ତରୁ ବାସେ ବାକଳକା । ୨୦ ।
ଚକ୍ରାକାରେ ଉଡ ବାଦୁଡର ଦଳ,
ଗଲେ ବୃକ୍ଷୋପରେ ପିଇ ମଦେ ଜଳ । ୨୧ ।
ବାହାରିଲେ ବୁଲ ବେଶଭୂଷାଧାରୀ
ବୁଲି ବୁଲ ବନୁ ଫେରିଲେ ଶିକାରୀ । ୨୨ ।

ଘଳାଳ କେ ଖରେ ସାଉଣ୍ଟି ବଡସୀ
ଯେମନ୍ତ ଅନ୍ଧ କରେ ଚଷୁଣ୍ଡା-ଗଡସୀ । ୨୩ ।
ମଳ-ଚିଣ୍ଡା କନା କୁବେଣୀ କଟିରେ,
ଥୁଣ୍ଟି ପିକା କାନେ, ବାମେତର କରେ । ୨୪ ।
ଭାଲ ଫିଙ୍ଗି ଫିଙ୍ଗି ଧାବରେ ସଧୀରେ,
ଭ୍ରମିଲେ ହରଷେ ଜଳ ତୀରେ ତୀରେ । ୨୫ ।
ନିର୍ଦ୍ଦୋଷୀ ଜୀବକୁ ବଧନ୍ତ ପିଶୁନେ,
ବ୍ୟାଘ୍ର ଠାରୁ ବଳି ହିଂସ୍ର ଶତଗୁଣେ । ୨୬ ।
ନାହିଁ କି କି ଅନ୍ୟ ଉପାୟ ଜଗତେ,
ପେଟ ପୋଷିବାକୁ ଅର୍ଜ୍ଜ କିଅବତେ ? । ୨୭
ବନଘରୀ ନାନା ପଶୁପକ୍ଷୀ ଗଣେ,
ବଧି ବ୍ୟାଧ ବକେ ପେଟର ପୋଷଣେ । ୨୮
ବଧର୍ମୀ ଏ ନିତି ପଇସା ଲାଳସେ,
କରନ୍ତି ଗୋବଧ ହରଷ ମାନସେ । ୨୯ ।
ଝବାଚ ଉହବେ ଯେତେ ଦୁଷ୍ଟ ଦସ୍ୟୁ,
ମହା ମହାବଳ ପୁଚ୍ଛହୀନ ପଶୁ । ୩୦ ।
ଭସନା ଲାଳସେ ମତ୍ସାଦି ସେବନ୍ତ,
ସେବିଣ ପରମ ଆନନ୍ଦ ଲଭନ୍ତ । ୩୧ ।
ମାଛମାନେ କିସ ଖାନ୍ତ ଭବି ଦେଖ
ମାଛ ତରକାରୀ ସାକ୍ଷାତ ନରକ । ୩୨ ।
ଦେବ ବଳି ଛଳେ କୋଟି କୋଟି ପଶୁ
ବଧନ୍ତ ପିଶୁନେ ଜିହ୍ୱା ଲୋଭ ବଶୁଁ । ୩୩ ।
ଈଶ୍ୱର ବଲ୍ଲଭା ମଙ୍ଗଳ କାରିଣୀ,
ବିଶ୍ୱ ମାତା ପର ବୋଲଉ ତାରିଣୀ । ୩୪ ।

ମାତା ସନ୍ତାନର ମାଂସ ଭକ୍ଷିବାର,
ଶୁଣା ତ ନ ଥଲା ଦେଖିବା ଦୁର୍ବାର । ୩୫ ।
ତୁହି କି ମା ସତେ ମାଗୁ ବୋଦା ବଳ ?
ନାହିଁ ନାହିଁ କିମ୍ପା କହନ୍ତୁ ଏ ଭଳି । ୩୬ ।
ଜିହ୍ୱା ଲୋଭେ ପଢ଼ ଘରି ଅନ୍ଧ ଦଳେ,
କରନ୍ତି ଏ ପାପ ପୁଣ୍ୟର ବଦଳେ । ୩୭ ।
ଏହି ମହାପାପେ ଚଣ୍ଡାଳ ସବତ,
ପା'ନ୍ତି ଜୀବେ ଅନ୍ତେ ଯନ୍ତ୍ରଣା ରୌରବ । ୩୮ ।
ଧିକ ଯଜ୍ଞ ବିଧି ସଂହିତା ପୁରାଣେ,
ଶାନ୍ତ ପଶୁ ବଧ ପଢ଼ିରେ ବଖାଣେ । ୩୯ ।

X X X

ବାଗେ ଠାବେ ଠାବେ ନରନାରୀ ଗଣେ,
ଭ୍ରମିଲେ ପ୍ରମୋଦେ ସାନ୍ଧ୍ୟ ସମୀରଣେ । ୪୦ ।
ଜଣ କେତେ ନାରୀ ଘାଟେ ଯାଇଥିଲେ
ଜଳ କୁମ୍ଭ ଘେନି ଘରେ ବାହୁଡ଼ିଲେ । ୪୧ ।
କେ ରସିକ ନିଶ ସଳଖି ସଳଖି,
ବୁଲେ ଧୀରେ ଚୀରେ ଅଟକି ଅଟକି । ୪୨ ।
ଦୁଷ୍ଟ ଟୋକା କେହୁ ଚଉପଦୀ ପଦେ,
ରମଣୀ କି ଦେଖି ଗାଇଲା ଆନନ୍ଦେ । ୪୩ ।
ଠରାଠରି ହୋଇ ଏକାଳେ ଚତୁରେ
ନାଗର ନାଗରୀ ଗଲେ ନିଜ ପୁରେ । ୪୪ ।
ସ୍ନାନାନ୍ତେ ଭୂଦେବ ଓଦାବାସ ପିନ୍ଧି,
ଏକ ଚିତ୍ତେ କଲେ ସନ୍ଧ୍ୟା ଯଥାବିଧି । ୪୫ ।

ଓଦା ବସନରେ କେ ସଖିକି ଗ୍ରହିଁ
ଟାକି ଅଛି କୂଳେ ସଙ୍ଗେ ଯିବା ପାଇଁ । ୪୬ ।
ସୁନ୍ଦରୀ ବସନୁ ଜଳ ସ୍ରୁବିବାରୁ
କଳ୍ପନାର ପଟେ ଝଲେ ଖବ ଗ୍ରନୁ । ୪୭ ।
ଏ ଶ୍ରୀଅଙ୍ଗ ଛାଡ ସଦନେ ମୁ ଗଲେ
ଦୂର ହେବି ଖଳ କାଦେ କି ବିକଳେ । ୪୮ ।

X X X

ବାଜଲା ଦେଉଳେ ସନ୍ଧ୍ୟା ଶଂଖ ଘଣ୍ଟ
ପଖାଉଜ ଡମ୍ଫ ଝାଂଝ ବଡ଼େ-ଘଣ୍ଟ । ୪୯ ।
ଢୋଲକ ନୌବତ ଧୌଁସା କରତାଳ
ନରସିଂହା ଡଙ୍କା ଖଞ୍ଜଡ କସ୍ତାଳ । ୫୦ ।
ପେଁକାଳ ମୃଦଙ୍ଗ ଗିଁନି ଏକତାର
ମଞ୍ଜିର ତବଲା ସେତାର ଚୌତାର । ୫୧ ।
ଶ୍ୱେତ ସୁବସନୀ ପଙ୍କଜ ବାସିନୀ
ଅଜ୍ଞ ନିଷ୍କ୍ରିୟର ଜଡତା ନାଶିନୀ । ୫୨ ।
ଶାରଳା ଦେବୀଙ୍କ ଶ୍ରୀକର ଶୋଭନୀ.
ବୀଣା ସପ୍ତସ୍ୱର ମନ ବିମୋହିନୀ । ୫୩ ।
ସାରଙ୍ଗୀ କଚ୍ଛପୀ ମଧୁର ନାଦନୀ
ଶ୍ରବଣେ ପୀୟୁଷ ପ୍ରବାହ ବାହିନୀ । ୫୪ ।
ଲାଗିଲା ପ୍ରଭୁଙ୍କ ମଙ୍ଗଳ ଆଳତି
କର ଯୋଡ କଲେ ଭକତେ ବିନତି । ୫୫ ।
ଆରମ୍ଭିଲେ ନଟେ ସୁନ୍ଦର ନର୍ତ୍ତନ,
ବଢ଼ଏ ପଞ୍ଚମେ ଗାଇଲେ ବେଦନ । ୫୬ ।

ଜଟା ଭସ୍ମଧାରୀ ବଇରାଗୀଗଣ,
ତମ୍ବୁରା ବଜାଇ ଗାଇଲେ ଭଜନ ।୫୭।
ପଖଉଜ ପଦ୍ମ ପାଦେ ଦେଇ ମତି
ଆରତ ଆରତେ ଗାଇଲେ ଆରତି ।୫୮।
ସୁମଧୁର ତାନେ ପଞ୍ଚମର ସ୍ୱରେ
ନେକିଲା କେ 'ଜୟ ଜଗଦୀଶ ହରେ' ।୫୯।
ବାଦ୍ୟ ନୃତ୍ୟ ଗୀତେ ଉଚ୍ଛୁଳ ଦେଉଳ
ବେଳୁ ବେଳ ହେଲା ଗହଳେ ଚହଳ ।୬୦।
"ଜଗଦୀଶ ଜୟେ" ପୂରିଲା ଅମ୍ବର
ପ୍ରତିଧ୍ୱନି ଛଳେ ଗାଇଲା କନ୍ଦର ।୬୧।
ସିନ୍ଧୁ ମୁଖ "ଜୟ ଜଗଦୀଶ" ଘୋଷ,
ଶୁଣି ଦେବବୃନ୍ଦ ଲଭିଲେ ସନ୍ତୋଷ ।୬୨।
ପ୍ରଭୁଙ୍କର ଲୀଳା ଖେଳା ଏ ଉତ୍ସବେ,
ବ୍ୟୋମ ପଥେ ରହି ଦେଖିଲେ ଅମରେ ।୬୩।

X X X

ପ୍ରାଚୀର, ଭବନ, ପାଦପ ଛାୟାରୁ
ବିଲୁଆ ବିବରୁ, ପୁର ପରିଖାରୁ ।୬୪।
ନିର୍ଜନ ମନ୍ଦରୁ, ପର୍ବତ କନ୍ଦରୁ,
ତରଙ୍ଗିଣୀ ତୀରୁ, ଅଗାଧ ସାଗରୁ ।୬୫।
ଫୁଲ ଉପବନୁ, ନିଘଞ୍ଚ କାନନୁ,
ଦଗାଦାର ମନୁ, ତସ୍କର ନୟନୁ ।୬୬।
ଖଚୁଆ ମୁଖରୁ, ଘାତକର କରୁ,
ଦୁଷ୍ଟ ମସ୍ତିଷ୍କରୁ, କପଟୀ ହୃଦରୁ ।୬୭।

ପ୍ରେମିକ ପ୍ରେମିକା ବେନିଙ୍କ ପ୍ରେମରୁ,
ମୀନକେତନର ପଞ୍ଚ ନାରାଚରୁ । ୬୮ ।
ଘୋର ରୂପ ଧରି ବାହାରି ଅନ୍ଧାର
ହେଲା ଅଗ୍ରସର ଗ୍ରାସିବ ସଂସାର । ୬୯ ।
ପରିନ୍ଦର ଦଳେ ଚମଃ ସଙ୍ଗେ ସଙ୍ଗେ
ଆନନ୍ଦେ ନିର୍ଭୟେ ବିହରିଲେ ରଙ୍ଗେ । ୭୦ ।
ଗମିଲା ଗଧିଆ ଗୁହା ତେଜି କରି
ସଦା ମତ୍ତ ଯହିଁ ଗନ୍ଧ ଅନୁସରି । ୭୧ ।
ଭଲ୍ଲୁକ ହରଷେ ତରକି ତରକି
ସ୍ଥଳେ ସ୍ଥାନେ ୨ ଅଟକି ଅଟକି । ୭୨ ।
ଭୀମ ପରକ୍ରମ ସିଂହ ବନପତି,
ଦୁରନ୍ତ ଡୁରୁକା, ଶାର୍ଦ୍ଦୂଳ ଦୁର୍ମତି । ୭୩ ।
ତିଆଗି ଅଳସ ସମୟେ ଉଠିଲେ
ଶିକାର ତଲାସେ ସଧୀରେ ଗମିଲେ । ୭୪ ।
ଅରଣ୍ୟ ମହିଷ, ସମ୍ବର, ଗୟଳ
ବାହାରିଲେ ଚରି କୋଟର ଭିତଳ । ୭୫ ।
କ୍ଷୁଧାର ଆତୁରେ କିରୀକିଟି ଦଳ
ଉଠି ଦେହ ଝୁଣି ଧାଇଁଲେ ଚଞ୍ଚଳ । ୭୬ ।
ଭକ୍ଷି ପଦେ ଦଳ ଫସଲ ବଶେଷ,
କ୍ଷତି କରିଥାନ୍ତି ଚଷାର ଅଶେଷ । ୭୭ ।
ଜମ୍ବୁକ ନିଚୟ ଗ୍ରାମର ନିକଟେ
ଏକେ ଏକେ ଆସି ରଡ଼ିଲେ ବକଟେ । ୭୮ ।
ଜଗତରେ କି ସେ ରଜନୀ ମାତାର
ଶୁଭ ଆଗମନ କରନ୍ତୁ ପ୍ରଚାର ! । ୭୯ ।

ଉଲ୍ଲୁକ, ପେଚକ କୋଟରୁ ବାହାରି
ରବଲେ ଉତ୍କଟେ ଦିଗନ୍ତ ବଦାରି । ୮୦ ।
ଆଗେ ଆଗେ ରହି ଖୁଣ୍ଟିଆ ଉଭୟ
ଗାଉଛନ୍ତି କି ସେ ରଜନୀର ଜୟ । ୮୧ ।
ଶୁଣି କୀଟ, ମୂଷା, ଏଣ୍ଡୁଅ, ଛୁଞ୍ଚୁଚ
ତରସ୍ତେ ରହିଲେ ଯହିଁ ତହିଁ ଲୁଚି । ୮୨ ।
ଏଣେ ଗର୍ତ୍ତିଅର ନିଚୟ ନିର୍ଭିକେ,
ଭକ୍ଷ ଅନ୍ୱେଷଣେ ଭ୍ରମିଲେ ଚୌଦିଗେ । ୮୩ ।
କ୍ରମେ କ୍ରମେ ହେଲା ବିଳୟ ଉଜ୍ଜ୍ୱଳ
କ୍ରମେ କ୍ରମେ ହେଲେ ଦୁର୍ଜନେ ପ୍ରବଳ । ୮୪ ।
କ୍ରମେ କ୍ରମେ ହେଲା ଅନ୍ଧାର ନିବିଡ଼,
କ୍ରମେ କ୍ରମେ ପଥେ ଊଣା ହେଲା ଭିଡ଼ । ୮୫ ।
କ୍ରମେ ଯେଣୁ ହେଲା ରଜନୀ ଅପାର
କ୍ରମେ ଘରୁ ହେଲେ ଦୁରନ୍ତେ ବାହାର । ୮୬ ।

X X X

ଚର ବିରହୀର ମତି ଧୃତି ଦଳି
ଫୁଟିଲା ଅନଙ୍ଗ ଜୟ ଶଙ୍ଖ "ମଲ୍ଲି" । ୮୭ ।
ବିଜୟୀ ମଦନ-ଶର ଏକ-ମୁନା
"କରବୀର" କରେ ଯୁବା ଦମ୍ଭ ଚୂନା । ୮୮ ।
ସତେ କି ଏ ସାଧୁ ବିରହୀ ଅହିତ
ହୋଇଅଛି ତାଙ୍କ ରୁଧିରେ ଲୋହିତ । ୮୯ ।
"ଗଜଦନ୍ତ" କାମ ରଣଘୋଷ ତୁରୀ
ଦେଖିଲେ ଯୁବକ ହିୟା ଛୁଏ ଚୂରି । ୯୦ ।

ଏ ପର କାମିନୀ କାନେ ରହିଥିଲେ
କାମୁକ ମନକୁ ନ ଛାଡଇ ତିଳେ । ୯୧ ।
ଫୁଟିଲା ଇଷିତ ବଙ୍କା "ବଗଦାନ୍ତ"
ସତେ କି ଏ କାମଯମ "ଯମଦାନ୍ତ" । ୯୨ ।
ମଧୁପ ଲମ୍ପଟ ବିମୋହିନୀ "ଜାଇ"
ବିରହେ ହୃଦୟ ଦିଅଇ କମ୍ପାଇ । ୯୩ ।
"ମାଧବୀ" କନ୍ଦର୍ପ କୁସୁମ କାର୍ମୁକ
ଦେଖି ଯୁବା ଉୟ ଉଡି ହେବେ ମୂକ । ୯୪ ।
ଅନଙ୍ଗ ଅନଳ "ରଙ୍ଗଣୀ" ସୁମନ
ପ୍ରବାସିଙ୍କି ସତେ କରିବ ଦହନ । ୯୫ ।
ହରଷେ ନିଶୀଥେ ଜାର ପତି କୋଳେ
ହସଇ ଯେସନ ନାରୀ ପ୍ରେମ ଭେଳେ । ୯୬ ।
ତେସନ ବକସି ପ୍ରମୋଦେ ଏ ଫୁଲେ
ପବନ ହିଲ୍ଲୋଳେ ହସନ୍ତ ପ୍ରଫୁଲ୍ଲେ । ୯୭
ଯଥା ଜାର ପତି ପ୍ରିୟ ମିତ୍ର ଆଗେ
ପ୍ରେମିକାର କଥା କହେ ଅନୁରାଗେ । ୯୮ ।
ତଥା ଲେକେ ବହି ମନ୍ଦ ସମୀରଣ
ସୁମନଙ୍କ ବାସ କରେ ବିତରଣ ! । ୯୯ ।
ସରସୀ ସୁନ୍ଦରୀ ପ୍ରାଣର ସମ୍ପଦ
ଫୁଟିଲ "କହ୍ଲାର" ରକ୍ତ କୋକନଦ" । ୧୦୦ ।
ଫୁଟିଲା ' ତଗର-ପାଦ" ଚାତାନ୍ତକ
ସର – ସୁରବାଳା ହୃଦୟ ପଦକ । ୧୦୧ ।
ଫୁଲ୍ଲ ସୁକୁମାରୀ "ଗୋଲାପ" ସୁନ୍ଦରୀ,
ଫୁଲ ଲକ୍ଷ୍ମୀଙ୍କର ପ୍ରିୟ ସହଚରୀ । ୧୦୨ ।

ନାହିଁ ପଟାନ୍ତର ତୋର ସୁଲପନା
ତୁହି ଏକା ତୋର ସୁଯୋଗ୍ୟ ତୁଳନା । ୧୦୩ ।
ତୋ ଛବି ଗରିମା ଦେବତାଙ୍କୁ ଜଣା
ନର ଚାର କାହୁଁ କରିବ କଳଣା । ୧୦୪ ।
ବହୁ ମୂଲ୍ୟ ମଣି ମାଣିକ୍ୟ ରତନ
ତ୍ରିଦବେ ତୋଠାରୁ ପା'ନ୍ତ ନୀରସନ । ୧୦୫ ।
ଏଣୁ କି ସାଗର ତଥା ଭୂଗର୍ଭରେ
ଲୁଚ ରହିଛନ୍ତ ଲଜ୍ଜା ଦୁଃଖଭରେ । ୧୦୬ ।
କିଞ୍ଚିତ ମାଧୁରୀ ଲଭି ତୋହଠାରୁ
ବାମା ଗୌରଗଣ୍ଡେ ସଞ୍ଚି ରଖିବାରୁ । ୧୦୭ ।
ମୋହନ୍ତ ସହଜେ ଜଗତର ମନ
ମୋହନ୍ତ ପାତାଳ ଅମର ଭୁବନ । ୧୦୮ ।
ତୋତେ ଲଭି ନାରୀ ମନ ଆନନ୍ଦତ
ବଡାଉ ଦ୍ୱିଗୁଣେ ଲଳନା ଲାଳତ୍ୟ । ୧୦୯ ।
ଲଭିବାକୁ ଦେବ ବର "କୈରବିଣୀ"
ଶଶି ସଙ୍ଗେ ପ୍ରୀତି କଲା ଉଖାରିଣୀ । ୧୧୦ ।
ତଥାପି ତୋ ସମ ନ ହୋଇ ବିକଳେ
ତପ କରେ ଅହର୍ନିଶି ବସି ଜଳେ । ୧୧୧ ।
ରଣୀ ପଦ ଲଭି ଚଷା କୁଳବଧୂ
ପିଇ ପାରଇ କି ? ଗଡାଧରୁ ମଧୁ । ୧୧୨ ।
ମହା ବିଡମ୍ବନା ହୋଇ କାକ ବଧୂ
ପାଞ୍ଚିବା ହେବାକୁ କୋକିଳର ବଧୂ । ୧୧୩ ।
ଖର୍ବ ହୋଇ ଇଚ୍ଛେ ସୁରତରୁ ଫୁଲ
ଆଶା ତୁଳନାରେ କି ଭୁଲେ କି ଭୁଲ । ୧୧୪ ।

ଫଳର କି କାଳେ କରେ ଯା ଏ ଶ୍ରମ
ହେବାକୁ ଗୋଲବ ବାଳା ! ତୋର ସମ । ୧୧୫ ।
ନ ହୁଅଇ କେବେ ଗାବେ ହେଲେ ଆନ
ଲଲଟ ଲିଖନ ବିଧିର ବିଧାନ । ୧୧୬ ।
ନିଜ ଆଧୁନିକ ସ୍ଥିତି ଅନୁସରି
ରହିବାର ବିଧି କପାଳ ଆଦରି । ୧୧୭ ।
ଖ – ପୁଷ୍ପ ପରି ଏ ବସନାକୁ ମଣି
ଥିଲେ ଯେ ହୁଅନ୍ତା ଆଦର୍ଶ ରମଣୀ । ୧୧୮ ।
ମତ୍ତ ହୋଇ ନିଜ ସୁନ୍ଦର ସୌରଭେ,
ଟେକି ଅଛି ଶିର "ଚମ୍ପା" ଗୋରୀ ନଭେ । ୧୧୯ ।
ଗର୍ବିଣୀ ହେବାରୁ ଚହି ମନେ ଦୁଃଖ,
ତା ପାଶେ ଯିବାକୁ ଭ୍ରମର ବିମୁଖ । ୧୨୦ ।
କରିବାକୁ ନିଜ କାର୍ଯ୍ୟର ସାଧନ
ତୋଷାମଦ ବିନା କରଇ ପବନ । ୧୨୧ ।
ଘଟୁ ଗୀବେ ଫୁଲି ମନ୍ଦ ପବନର
ନିଜକୁ ସେ ମଣେ ଶ୍ରେଷ୍ଠୁ ଶ୍ରେଷ୍ଠତର । ୧୨୨ ।
ପ୍ରେମିକାର ମନ ମୋହନେ ପ୍ରେମିକ
ଟେକା ଟେକି କରି କହଇ ଅଧିକ । ୧୨୩ ।
ବାହ୍ୟ ମାଧୁରୀରେ ଭୁଲେ ମୂଢ଼ ମନ,
ସଦ୍‌ଗୁଣ ଚତୁରୀ ଲୋଡେ ବିଜ୍ଞଜନ । ୧୨୪ ।
"ସୀତା-ମନୋହର" ନାମ ମାତ୍ର ସାର
ଅଘ୍ରାଣେ ହୁଅଇ ମଥା ବ୍ୟଥା ସାର । ୧୨୫ ।
"କେତକି" କାମିନୀ ବଡ ମାୟାବିନୀ
କଳଙ୍କିନୀ ଯେଣୁ ଭ୍ରମର ଘାତିନୀ । ୧୨୬ ।

ମଦ ହସା ହସି "ମଲ୍ଲୀ" ମନ କିଣେ
ଅଳଭୁକ ପଣେ ତ୍ରିଭୁବନ ଜଣେ । ୧୨୭ ।
"ସୂର୍ଯ୍ୟମୁଖୀ" ଦେଖି ତୋ ରୂପ ରତନେ
ବସିଅଛୁ ଲଜେ ଆନତ ବଦନେ । ୧୨୮ ।
ନିର୍ଗନ୍ଧ 'କିଂଶୁକ' ନୁହେ ତୋ ସମାନ,
ବନେ ଫୁଟି ଝଡେ ଲଭି ଅପମାନ । ୧୨୯ ।
କୁରୂପ ନିଜର ଘୃଣି "ନାଗେଶ୍ୱର"
ଈର୍ଷାନଳେ ଜଳ ଶୁଷ୍କ କଳେବର । ୧୩୦ ।
ଉଦାସୀନ ବେଶେ "ବକୁଳ" ଲଳନା
ବାଥିତ ଅନ୍ତରେ କରଇ ଯବନା । ୧୩୧ ।
ଅଳ ପ୍ରାଣ ସଖି ରବି ପ୍ରଣୟିନୀ
ସମୀରଣ ପ୍ରିୟା ସ୍ୱୈରିଣୀ "ନଳିନୀ" । ୧୩୨ ।
ଆହା ! କେଡେ ରୂପ ଗୁଣବତୀ ଏହି
ମିହିରଙ୍କ ପର ପାଟ ମହାଦେଈ ! । ୧୩୩ ।
ଅଉଜନୀ ଯେତେ କୁସୁମ ସୁନ୍ଦରୀ,
ହେବାକୁ ତୋ ପଦେ କିଙ୍କରୀ କିଙ୍କରୀ । ୧୩୪ ।
ଆନ ଫୁଲେ କେହି ବାର-ବିଳାସିନୀ,
କେହି ବା କୁଳଟା କେହି ବିଟପିନୀ ! । ୧୩୫ ।
ତୁହି ବ୍ରୀଡ଼ାବତୀ ବାଳା କୁଳଶିଳା
ପତିବ୍ରତା ଭୀରୁ ସରଳା ସୁଶିଳା । ୧୩୬ ।
ଫୁଲ କୁଳେ ତୋତେ କେ ନୁହନ୍ତି ସରି
ଫୁଲ ରଜ୍ୟେ ତୁହି ସିନା ଫୁଲେଶ୍ୱରୀ ! । ୧୩୭ ।
ଗୋଲାବ ଅଧର ଗୋଲାବୀ ବସନା
ଗୋଲାବ ଭୂଷଣା ଗୋଲାବୀ ବରନା । ୧୩୮ ।

ଆଗେ ଯେବେ ହସୁଥିବ ମନ୍ଦ ମନ୍ଦ,
କହ ବିଶ୍ୱେ କେ ନ କରିବ ପସନ୍ଦ ! । ୧୩୯ ।
ହେଲେହେଁ ମର୍ଦ୍ଦନ ଗୋଲାବ ତଇଲେ
ହେଲେହେଁ ମାଜଣା ଗୋଲାବ ସଲିଳେ । ୧୪୦ ।
ଥିଲେ ହେଲେ କୋଳେ ଗୋଲାବ ବରଣା
ପିଉ ଥିଲେ ହେଲେ ଗୋଲାବର ପଣା । ୧୪୧ ।
ପିନ୍ଧ ଥିଲେ ହେଲେ ଗୋଲାବୀ ବସନ
କରେ ଥିଲେ ହେଲେ ଗୋଲାବ ସୁମନ । ୧୪୨ ।
ଘେନୁ ଥିଲେ ହେଲେ ଗୋଲାବ ଅତର
ଅବସାଦ ନାହିଁ ଗୋଲାବେ ମନର । ୧୪୩ ।

X X X

ପତିର ବରହେ ଶୋକେ କମଳନୀ
କାନ୍ଦ କାନ୍ଦ ଆହା ଦିଶୁଛ ମଳନୀ । ୧୪୪ ।
କରୁଅଛ ଚିନ୍ତା ନେତ୍ର ଦର-ମୁଦ
କି କରିବ କିଛି ଦିଶୁ ନାହିଁ ବୁଦ୍ଧି । ୧୪୫ ।
କୁମୁଦନୀ ଶିରୀ ନ ସହି ସୁନ୍ଦରୀ
ଯାଉଛ କି ଅବା ଈର୍ଷା ଦୁଃଖେ ସରି । ୧୪୬ ।
କମଳ ସୁନ୍ଦରୀ ! ଭବ କୁମୁଦିନୀ
ଲେଖା ଯୋଖାରେ ନ ତୋ ସାନ ଭଗିନୀ । ୧୪୭ ।
ତୁ ପଗ ବୟସେ ମାନେ ଧନେ ଗୁଣେ,
କୁମୁଦିନୀଠାରୁ ତେ ଶତ ଗୁଣେ । ୧୪୮ ।
ପୁଣି ଅଟଇ ସେ ତୋର ଦାସୀ ପରି
ଯେତେ ହେଲେ ତୋତେ କାହୁଁ ହେବ ସରି ! । ୧୪୯ ।

କାହିଁକି ତାଠାରେ କରୁଛୁ ଈର୍ଷା
କି ଛାର ତୋ ହୃଦ କି ଛାର ଜିଗୀଷା ! । ୧୫୦ ।
ଦିନ – ନାଥଙ୍କର ପ୍ରିୟ ମହାଦେଈ
ଅଟୁ ପର ତୁହି ସୁକୋମଳ ଦେହି । ୧୫୧ ।
ଗୁଣମଣି ରାଣି ! ଥରେ ମନେ ଭାବ,
ଏହା ନି କି ଆହା ! ରାଣୀର ସ୍ୱଭାବ ।୧୫୨ ।
ଛାଡ ଛାଡ ଈର୍ଷା ଛାଡ ବୈର ଭାବ
ଧର ମିତ୍ର ଭାବ ବହି ଦୟା ଭାବ ! । ୧୫୩ ।
ଦୋଷ କଲେ ହେଲେ ଉଦଗୁଣ ନିଧି
ପାନକୁ ତ କ୍ଷମା କରିବାର ବିଧି । ୧୫୪ ।
କର କର କ୍ଷମା ଯେତେ ଦୋଷ ତାର
ପାଇବୁ ପ୍ରଶଂସା ଜଗତେ ଅପାର । ୧୫୫ ।

X X X

ଦେଖ କୁମୁଦିନୀ ହସେ ଗଦଗଦ
ଲଭିଲା କି ଅବା ପ୍ରାଣର ସଂପଦ । ୧୫୬ ।
ଫଟି ଭେଟ ଆଶେ ମଦେ ମଦେ ହସି
ଦିବ୍ୟ ରୂପ ଧରି ଆସୁଛି ଶକଟି । ୧୫୭ ।
ଯୌବନ ସୁଷମା ଭଳ ଦରପଣେ
ଲାଜ ହର୍ଷେ ଦେଖି ନିଜେ ଧନ୍ୟ ମଣେ । ୧୫୮ ।
ଲାଜ ହର୍ଷ ମିଶା ହସ କି ସୁନ୍ଦର
ଯଦେ କି ତା ମୁଖ ପୀୟୂଷର ଘର । ୧୫୯ ।
ଅମହଣୀ ରୁଣେ ହସି ଖଲଖଲ
ନଳିନୀ କି ଅବା ମାରୁଛି ଟିକଲ । ୧୬୦ ।

ଭଗ୍ନି କି ଚିକଲ ମାରିବାର କଥା
ଦେଖିଲି ତୋଠାରେ ଆଜ ନୂଆ କଥା । ୧୬୧ ।
ତୋ ଭଗିନୀ ପର ଦୁଃଖିନୀ ନଳିନୀ
ଭରି ଯାଉ ଅଛ ଶୋକେ ବରହିଣୀ । ୧୬୨ ।
କାହିଁକି ଆନନ୍ଦେ ହସୁ କୁମୁଦିନୀ ?
ଭଗିନୀର ଦୁଃଖେ ନ ହୋଇ ଦୁଃଖିନୀ । ୧୬୩ ।
ଦିବସେ ତୋ ସମ ନ ହୋଇ ଦୁଃଖିନୀ,
ହରଷରେ ପୁଣି ହସେ କମଳିନୀ । ୧୬୪ ।
ବଝର ଚିତ୍ତରେ ଏ କିସ ବିଚିତ୍ର,
ଯୁଗଳ ଭଗିନୀ ତୁମ୍ଭର ଚରିତ୍ର । ୧୬୫ ।
ଭଗିନୀ ଭଗିନୀ ଈର୍ଷା ଫାଦେ ପଡ଼
ମରୁଛ କାହିଁକି ଝଗଡ଼ ଝଗଡ଼ ? । ୧୬୬ ।
ଈର୍ଷା କରିବାର କୁସୁମ କୋମଳେ,
ଶିଖାଉଛି ଅବା ମାନବ ସକଳେ ! । ୧୬୭ ।
ତୁମ୍ଭଠାରୁ ନିଶ୍ଚେ ଈର୍ଷା କରିବାର,
ଶିଖି ଲୋକେ ତାହି କରନ୍ତି ବେଭାର । ୧୬୮ ।
ପର ଯଶ କଥା ଶୁଣି କେ ଶ୍ରବଣେ
ହୃଦେ ବଜ୍ରାଘାତ ହେଲ ପ୍ରାୟ ମଣେ । ୧୬୯ ।
ଚକ୍ଷେ ନ ଦେଖିଲେ ପର ଜନ ଦୁଃଖ,
ବରଷ କା ମୁଖ ମନେ ନାହିଁ ସୁଖ । ୧୭୦ ।
ପର ଶିରୀ ଦେଖି କେହୁ ମୁଖ ମୋଡେ
କେ ପୁଣି ଆପଣା ଛାତିକୁ କାମୁଡେ । ୧୭୧ ।
କେଉଁ ମାୟାବିନୀ ପତିର ନିକଟେ
ଭଣେ କା'ର ଖଳ ନିଶାକାଳେ ଖଟେ । ୧୭୨ ।

ତା କୁଟିଳ ନେତ୍ରେ ଯଥା ତାପେ ବହ୍ନି,
ପ୍ରତିବାସୀ ଜନେ ଯାଉଛନ୍ତି ଜଳି । ୧୭୩ ।
କୃଶ କଳେବର ଈର୍ଷାନଳେ ଜଳି
ଛାଡେ ଦୀର୍ଘଶ୍ୱାସ ନାଗିନୀରୁ ବଳି । ୧୭୪ ।
ନିଜ ଦନ୍ତାଘାତେ ରକ୍ତାକ୍ତ ଅଧର
ରସନାରୁ ତାର ସ୍ରବଇ ଜହର । ୧୭୫ ।
ବିଚିତ୍ର ନାଗିନୀ ବିଚିତ୍ର ଗରଳ,
ଦଂଶନାଦି ତାର ବଚିତ୍ର ସକଳ । ୧୭୬ ।
ଦଂଶଇ ସେ ଯଦି ଏକର ଶ୍ରବଣ,
ତା ବିଷମ ବିଷେ ଅନ୍ୟର ମରଣ । ୧୭୭ ।
ବନ୍ଧୁ ଭାଇ ପୁତ୍ରେ ଉପୁଜାଇ ଭେଦ
ଏ ବିଷମ ବିଷ ଜନମାଏ ଖେଦ । ୧୭୮ ।
ବିମାତା ସପତ୍ନୀ ଈର୍ଷା ବଡ ଘୋଟ,
ଏ ବେନିଙ୍କ ପର ଜୁଝା ନାହିଁ ପାଠ । ୧୭୯ ।
ଈର୍ଷାର ପ୍ରସାଦେ ଯେବେ କଲେ ମନ
କରନ୍ତି ଅସୀମ ଅସାଧ୍ୟ ସାଧନ । ୧୮୦ ।
ଛଳେ ବିଶ୍ୱ ଜୟ ଅବଳାର ଦଳ,
କଳିବାକୁ ତାଙ୍କ ମନ କା'ର ବଳ । ୧୮୧ ।
ଏହି କୂଟ ମନ୍ତ୍ରେ ରାମ ପ୍ରିୟ ପକ୍ଷୀ
ଚଉଦ ବରଷ ହେଲେ ବନବାସୀ । ୧୮୨ ।
ଯାର ମନ୍ତ୍ର ବଳେ ଭୁଲନ୍ତି ଦେବତା
ତା ଆଗେ ନଶ୍ୱର ନରର କି କଥା ? । ୧୮୩ ।

X X X X X

ଈର୍ଷ୍ୟା ଚେଲା ଦଳେ କରି କ୍ରୁର କାମ
କହ ତ ଜଗତେ ଲଭିବ କି ନାମ ? । ୧୮୪ ।
ଈର୍ଷା କଲେ ପର କାଳେ କୀଟକୁମ୍ଭେ
ପଡନ୍ତି ସକଳେ ନ ଜାଣ କି ତୁମ୍ଭେ ? । ୧୮୫ ।
ଇହେ ନିନ୍ଦା ପରେ କଷଣ ଅପାର
ଛାଡ ଛାଡ ଈର୍ଷ୍ୟା ଅଷମ ବ୍ୟାପାର ! । ୧୮୬ ।
ଭଂଗୁର ଏ ଭବେ କେହି ରହି ନାହିଁ
ଚିର ଦିନ ପାଇଁ କେ ରହିବ ନାହିଁ । ୧୮୭ ।
କିଛୁ ଦିନ ଲାଗି ଆସି ଭବ ହାଟେ
ସର୍ବଦା ସରିଲେ ଯା'ନ୍ତି ନିଜ ବାଟେ । ୧୮୮ ।
କେତେ ଦିନ ଥିବ ଏ ନବ ଯୌବନ
କେତେ ଦିନ ଥିବ ଏ ରୂପ ରତନ ! । ୨୮୯ ।
ନବ ଯୌବନର ଆଜି ଯେତେ ଝଲି
କାଲିକି ନ ଥିବ ଆଉ ସେ ଏ ଭଲି । ୨୯୦ ।
ଏକ ପରେ ଏକ ଦିନ ଯାଏ ଚାଲି
ବହି ଯାଏ ଯଥାକ୍ରମେ ନଦୀ ବାଲି । ୧୯୧ ।
ଦିନ ସଙ୍ଗେ ସଙ୍ଗେ କ୍ରମେ ଆୟୁ ଜମା
ଆୟୁ ସଙ୍ଗେ ସଙ୍ଗେ ଯୌବନ ସୁଷମା । ୧୯୨ ।
ଅହେତ ଧନିଆଁ ବୃଥା ଅଭିମାନ
କରି କରେ ମୂଢ ଧର ତୁଚ୍ଛ ଜ୍ଞାନ । ୧୯୩ ।
ଅଲକ୍ଷିତେ ରହି ଚାହିଁ ଅଛି କାଳ
କାଳ ହେଲେ ଝିଂକି ନେବ ତାଳ । ୧୯୪ ।
ନ ଗଣିବ ତିଳେ ଗରବ ଗୁଣକୁ
ନ ଗଣିବ ତିଳେ ସୁନ୍ଦର ପଣକୁ । ୧୯୫ ।

ନ ଶୁଣିବ ମୃଦୁ ବିନୟ ବଚନ
ବୀଣା ବନିନ୍ଦିତ ସୁମଧୁର ସ୍ୱନ । ୧୯୬ ।
ନ ମୋହିବ ରୂପ ନବ ଯଉବନ
କାଳ ଦଣ୍ଡଧାରୀ ଭଳୁପଡ଼ି ମନ । ୧୯୭ ।
କଟାକ୍ଷର ଛଟା ଶାଣ ଦିଆ ବାଣ
ନ ଭେଦିବ ତାର ହୃଦ ବଡ଼ ଟାଣ । ୧୯୮ ।
ନ ମାନିବ ମୃଦୁ ମଧୁ ମନ୍ଦହାସ
ଶମନେ ଭଣ୍ଡିବା ବିଫଳ ପ୍ରୟାସ । ୧୯୯ ।
କ୍ଷଣ ରୁଚି ପରି ଯୌବନ ମଶାଲ
ନ ଜଳିବ ସମ ଭବେ ଚିର କାଳ । ୨୦୦ ।
ସ୍ଥିର ନୁହଇ ଏ ଯୌବନ ଜୀବନ
ଅସାର ସଂସାରେ ସ୍ଥିରଟି ମରଣ । ୨୦୧ ।
ଉତ୍ତାଳ ତରଙ୍ଗ ସହେ କି ତରଣୀ ?
ହତ୍ୟେ ବାହୁ ଚାପ ସହେ କି ଲବଣୀ ? । ୨୦୨ ।
ସହେ କି ସୁମନ ତପନ ତାପନ ?
ବାର୍ଦ୍ଧକ୍ୟର ଧାଡ଼ ସହେ କି ଯୌବନ ? । ୨୦୩ ।
ଘୋଟିବ ଜୀବନେ ଶେଷ ମହାନିଶି
ମାଟିର ଘଟ ଏ ମାଟି ଯିବ ମିଶି । ୨୦୪ ।
ସେତେବେଳେ କାହିଁ ଯିବ ଯଉବନ
ଅବିଳ ଦିଶିବ ପ୍ରଫୁଲ୍ଲ ବଦନ ! । ୨୦୫ ।
କାହିଁ ଯିବ ହସ ମିଶା ପ୍ରେମ ବାଣୀ
କାହିଁ ଯିବ ରଙ୍ଗି ତେରଛି ଚାହାଣୀ ! । ୨୦୬ ।
ଯଉବନ ମାତେ ମଠା ଗୌରଗଣ୍ଡ
କାହିଁ ଯିବ ଆଶା ସବୁ ହେବ ପଣ୍ଡ ! । ୨୦୭ ।

କାହିଁ ଥିବ ଭବୀ ସୌଭାଗ୍ୟ କଳ୍ପନା
କାହିଁ ଥିବ ସୁଖ ସମ୍ଭୋଗ ବାସନା ! । ୨୦୮ ।
କାହିଁ ଥିବ ଝଲ୍ଲ ବସନ ଭୂଷଣ
ଟକ୍‌କଣ ଝକଣ ଝଖି ଫୁଲ୍ଲପଣ ! । ୨୦୯ ।
କାହିଁ ଥିବ ଝଲ ଏତେ ରଙ୍ଗ ଢଙ୍ଗ
ଭେଲ ହେବ ଶେଷେ ପ୍ରିୟ ସୁନା ଅଙ୍ଗ । ୨୧୦ ।
ଦୁଇ ଦିନ ପାଇଁ ମର୍ତ୍ତ୍ୟେ ଦେହ ଧରି
ବୃଥା ଫୁଲ ଯା'ନ୍ତୁ ଆଡମ୍ବର କରି । ୨୧୧ ।
ଜୀବନେ ଯୌବନ ମଧୁ ମାସ ଶେଷେ
ବୁଝିବ ମୋ କଥା ଉଦାସୀନ ବେଶେ । ୨୧୨ ।



# ଖିଆଲ-କୁସୁମ

( ଗୀତି-ଚୁଂଗୁଡ଼ା )

ତୃତୀୟ ଭାଗ

( ଉତ୍ତରାର୍ଦ୍ଧ )

# ଅମର କବି

ଡକ୍ଟର ହରେକୃଷ୍ଣ ମେହେର

ଲେଖିଯାଏ ଯେତେ ଅମର କବି
ଅପୂରୁବ ଭାବ ଜାଗି ଉଠେ ମନେ
ଅନୁପମ ତାର ଦିବ୍ୟ ଛବି ।
ବିଧାତାରୁ ବଳି ତାହାର ସୃଷ୍ଟି
ଅଦ୍ଭୁତ ତାର ଉଦ୍ଭାବନୀ
ମୂକ ମୁଖେ ଭାଷା – ପୀୟୂଷ ଝରାଏ
ପାଷାଣ ଅଙ୍ଗେ ସଂଜୀବନୀ ।
କାବ୍ୟାକାଶେ ତା' ଝକାଶେ ନିୟତ
ବିମଳ ବର୍ଣ୍ଣ ବିବସ୍ୱାନ
ବୁଡିଯାଏ ହେଲେ କୋଟି ତମିସ୍ର
ଆସି ହେଲେ ତାହା ସନ୍ନିଧାନ ।
ଅତି ମାନବର ଅତି ମାନସର
ଅତୀନ୍ଦ୍ରିୟର ଗଷ୍ଟ ପରେ
ଅବିରତ ସେଇ କବିର ଅମର
ଆତ୍ମା ବିହରେ ହର୍ଷଭରେ ।
ସହଜ ଶକତି ପ୍ରତିଭାର ବଳେ
କ୍ରାନ୍ତ ଦରଶୀ କବିର ମନ
ତାର ଅନନ୍ତ ଶିଳ୍ପ କଳାରେ
ଏ ତ ଆଦର୍ଶ ନିଦର୍ଶନ ।

ସେ ଶକତି ଘେନି ଜଗି ଉଠେ ତାର
ନବ୍ୟ ଭବ୍ୟ କାବ୍ୟ କଳା
ତେଣୁ ବରେଣ୍ୟ- ଗଣେ ସେ ଗଣ୍ୟ
କୃତି ତା' ସତତ ପୁଣ୍ୟଫଳା ।
ଲେଖିଯାଏ ଯେତେ ଅମର କବି
କମନୀୟ ତାର ଅମର ସାଧନେ
ନମନୀୟ ଶତଦିବ୍ୟ ଛବି ।

* *

## ମିଳନର ଛନ୍ଦ

ଶ୍ରୀ ଭଗୀରଥ ପଟନାୟକ

ମଳୟ ପବନ ହୋଇ ଖେଳିବି ମୁଁ ଖେଳ
ତମଯନ୍ତ୍ର ବଲ୍ଲରୀରେ
ଭ୍ରମର ରୂପରେ ସଦା ଗାଇବି ମୁଁ ଗୀତ
ଗୁଞ୍ଜରଣ ଲହରରେ ॥
ସପତ ରଙ୍ଗେ ଧୋଇବ ଆପାଦ ମସ୍ତକ
ସବିତା ମୁଁ ହୋଇ
ଝଟକି ଉଠିବ ତମେ ଏ ସୃଷ୍ଟି ବକ୍ଷରେ
କମନୀୟ ହୋଇ
ଭଳି ଭଳ ଝଲୁଥିବ ଚାହିଁ ରହିଥିବ
ନିର୍ନିମେଷ ନୟନରେ ॥

ଚନ୍ଦ୍ରମା ରୂପରେ ସଦା ଢାଳଦେବି ଅଙ୍ଗେ
ଶୀତଳ କିରଣ
ଚୁମ୍ବକ ବାଣ ପେଶିବ ଶୀହରଣ ଦୋଳ
ହୋଇ ମୁଁ ମଦନ
ପାରିଜାତ ଗଜରରେ ମଣ୍ଡିବି କବରୀ
ଦେବରାଜ ଅନ୍ତଃପୁରେ ॥
ଶୀକରରେ ଧୋଇଦେବି ହୋଇ ମୁଁ ବାଦଲ
ଓଦା ବସ୍ତ୍ରେ ତନୁ
ଜଡ଼ରହି ଉକୁଟିବ କମନୀୟ ଅଙ୍ଗ
ନ ଲିଭିବ ମନୁ
ବୀଣା ହୋଇ ରହିଯିବି ତାନ ମାନ ତୋଳି
ତମ କର ଯୁଗଳରେ ॥
ସଂସାର ସାଗର କୋଳେ ତମେ ସିନ୍ଧୁ ଜେମା
ବଇକୁଣ୍ଠୁ ଆସି
ପ୍ରଣୟ ଡୋରୀରେ ବାନ୍ଧ ତୋଳନେବି ପ୍ରେମେ
ନଦୀଘୋଷେ ବସି
ବିହରିବା କ୍ଷୀରବ୍ଧିରେ ସପ୍ତଫେଣୀ ତଳେ
ଜଗମୃତ୍ୟୁ ଶୂନ୍ୟ-ପୁରେ ॥
ସାଗରର କୂଳେ କୂଳେ ଘନ ଝାଉଁ କୁଞ୍ଜେ
ରସ କ୍ରୀଡ଼ା ପାଇଁ
ଶ୍ରୀରାଧା ଗୋ ରହିଁଥିବ ତବ ଆଗମନ
ମୁରଲୀ ବଜାଇ
ନୀଳ ଢେଉ ବକ୍ଷ ଚଢ଼ି ମେଳ ଦେବା ନାବ

ବାସ ଅଳକା ପୁରୀରେ ।।

ତାଣ୍ଡବ ନୃତ୍ୟ ମୁଦ୍ରାରେ କମ୍ପାଇ ମେଦିନୀ

ଡେଙ୍ଗ କଇଳାସ

ଉଚ୍ଛନ୍ନ ହୋଇବ ସୃଷ୍ଟି ଡମ ଡମ ଶବ୍ଦେ

ଚମେ ଗୋ ପୀୟୂଷ

ଅର୍ଦ୍ଧନାରୀଶ୍ୱର ରୂପ ଦେଖିବ ଜଗତ

ମିଳନର ସୁରେ ସୁରେ ।



## ଘୋଷଣା

କୃଷ୍ଣଦାସ

( ଝୁଲିଆ ଡାରି ହୋଇଥିବା ଲୋକଟି ସମ୍ପର୍କରେ )

ଏଠି କଦମ୍ବ ବନ ନାହିଁ
କି ଯମୁନା ନାହିଁ
ଗଛ ବୋଲି ଗଛଟିଏ
ଶବ ଗଛଟିଏ ।। ୧ ।।

ସେଇ ଗଛ ଡାଳରେ
କୌପୀନଟିଏ ଝୁଲାଇବା
ଆଶା ନେଇ

ହଡଥିବା ଲୋକଟି
ଭାଙ୍ଗି ବସିଛି ଯେ ॥ ୨ ॥

ଗଛରେ ଡାଳ କେବେ କଅଁଳ କି ? ॥ ୩ ॥

ଏଠି ବଇଁଶିର ସୂନ ଶୁଣା ନ ଯାଇ
ଧଇଁ ସଇଁ ଶବ୍ଦ ଶୁଣାଯାଏ
ଜୀବନର ବୋଝ ବୋହି
ଅତିଷ୍ଠ ହୋଇଥିବା ଲୋକଟି
ନିଜ ବୋଝ ତଳେ
ନିଜେ ହଜଯାଏ ॥ ୪ ॥

ଆକାଶରେ ମେଘ
ଧରିତ୍ରୀର ଓଠ ଫଟା
ଶୁଖିଲା ଶୁଖିଲା
ପବନର ବହୁଆଡି ଛାଟେ
ଆକାଶ କି କର୍ମି ଉଠେ
ମେଘ ଚାଲିଗଲା ॥ ୫ ॥

ସୂର୍ଯ୍ୟ ହସି ଦେଲା ଯେ
ବୁଢା ପାଟିରୁ ଲାଳ ଗଡଲା ପରି
ଦି ଚାରିଟୋପା
ତଳେ ପଡଗଲା
ବୁଲା କୁତା ପରି
ଶୁଖିଲା ବାଲି
ତାକୁ ଚାଟି ନେଲା ॥ ୬ ॥

ସବୁ ପରିଷ୍କାର
        ଗଛରୁ ପତ୍ର ବି
        ଶ୍ମଶାନର ନୀରବତା
        ପ୍ରତିଟି ଓଠରେ
        ନିମନ୍ତ୍ରଣକାରୀ ନିଜେ
        ନିଜକୁ ବି ଭୁଲିଯାଏ
                ବିଧିକୁ ପଛରେ ॥ ୭ ॥

ହାଟସାଗ
        ଅନେକ ପସଗ
        ସବୁ ପସଗରେ
        ଚଢେଇଟିଏ
        ହାତ ବଢେଇ ଦେଲେରେ ବାୟା
                ଫୁର୍ର୍ ॥ ୮ ॥

ଘର କୋଣରେ
        ଜାଲ ବୁଣିଥିବା ବୁଢ଼ିଆଣୀଟି
        ନିଜ ଜାଲରେ ବନ୍ଦ ହୋଇ
        ଓହଳି ଥାଏ
                ଆତ୍ମହନ୍ତାର ଶବ ପରି ॥ ୯ ॥



# ହର ଶଙ୍କର ଜଣାଣ

ଶ୍ରୀ ପରମବ୍ରହ୍ମ ଖମାରୀ

କୋଶଳ ପ୍ରଦେଶ ବିଖ୍ୟାତ ଠାକୁର ନମୋ ନମ ହରିହର
ଭଗତ ମାନସ ସରୋବର ନୀରେ ତୁମ୍ଭ ନୀଳ ଇନ୍ଦବର ।

ଅଟବୀ ପୂରିତ ସାନୁମାନ କୋଳେ କଲ ସ୍ଥାପେ ପୁଣ୍ୟଧାମ
ପାଳନ ସଂହାର କରତା ଯେଉଁଠି ଧନ୍ୟ ସେହି ପୂତସ୍ଥାନ ।

କୀଟୁଁ ବ୍ରହ୍ମପାଏ ପାଳିଥାଅ ଜଣେ ଜଣେ ମହା କର୍ମଦାନୀ
ଭିନ୍ନ ତନୁ ସିନା ଏକ ଆତ୍ମା ତବ ଅଧମ ନ ପାରେ ଜାଣି ।

ଜାଣିଛନ୍ତି ସିଦ୍ଧ ମୁନି ତବ ଗାଥା ମହିମା ମହତ ପଣ
ବୋଲି ନିବସନ୍ତି ତବ ଲୀଳା ଧାମେ ଉର୍ଦ୍ଧ୍ୱରେ ଟା ପଣ ।।

ତୁମ୍ଭରି ସେବାରେ ନିର୍ଝର ଝରଇ କୁଳୁ କୁଳୁ ତାନ ଧରି
ଯଥା ସଦ୍ୟ ସ୍ନାତା ସ୍ୱୟଂ ସିଦ୍ଧ ବିପ୍ର ଚଳେ ପୁଣ୍ୟ ଶ୍ଳୋକ ସ୍ତୁତି ।

ବନ୍ଧୁର ଶଯ୍ୟାକୁ ନାହିଁ ତାର ଶଙ୍କା ରଙ୍ଗା ଯେଣୁ ତୁମ୍ଭ ପ୍ରତି
ଯଥା ପତିବ୍ରତା ସତୀ ଶିରୋମଣି ସେବଇ ଆପଣା ପତି ।

ତୀର ତରୁ ଲତା ତାହା ପ୍ରସାଦରେ ଲଭନ୍ତି ଦୀର୍ଘ ଜୀବନ
ମହତଙ୍କ ଆଶ୍ରା ନୁହଇ ବିଫଳ ସିଦ୍ଧନ୍ତ ତ ପ୍ରବଚନ ।

ଧନ୍ୟ ସେ ଅଚଳ ପାଏ ପୁଣ୍ୟ ଫଳ ସତତ ତୁମ୍ଭଙ୍କୁ ସେବ
ପତିତ ତାଲିକା ମଧ୍ୟରେ ଟା ନାମ ନାହିଁ କହିବ କିଏ ବ ।

ସଜାଇ ଦେଇଛି ତବ ନିରଜନେ କୁସୁମିତ ରମ୍ୟ ଲତା
ବ୍ରତତୀ ସକଳ ଫଳ ପ୍ରସୂନରେ ଅଙ୍ଗେ ବହି ସରସତା ।

କରନ୍ତ ସେଠାରେ ହେ ସବୁ ପ୍ରଦାନ ଯାର ନାହିଁ ଛାୟାଦାନୀ
ମଣନ୍ତ ନିଜକୁ ମହା ଭାଗ୍ୟବାନ ତୁମ୍ଭେ ତ ପାରୁଛ ଜାଣି ।

କଳକଣ୍ଠ କଣ୍ଠୀ ଆନ ଦ୍ୱିଜ ଚୟ କରି ମଧୁ କଳରବ
ତବ ଗୁଣଗୀତି କହୁଥାନ୍ତି ହେଜି ହୃଦେ ଯାହା ସମୁଦ୍‌ଭବ ।

ଶୀତଳ ମରୁତ ଚଳଇ ସତତ ପ୍ରସୂନ ସୌରଭ ଘେନି
ବନଦେବୀ ଅବା ପଠିଆଏ ଭେଟି ଧନ୍ୟ ଏକା ସେହି ବେନି ।

ଧୀମାନି ପ୍ରକୃତି ନିୟତି ଇଙ୍ଗିତେ ଆଦରଣ ଜ୍ଞାନପାଇ
ଯୋଗ୍ୟତା ପରଖା ଅବିଚଳ ଭବେ ତବ ପଦ୍ମ-ପାଦ ଧ୍ୟାୟି ।
(ଅବଗାହି ଆଦିବାସୀ ନାଁ ବାଳକ କରୁ ପୂଜା ଭେଦ ପାଇ
ପ୍ରକାଶିଛ ସତେ ମାନବ ସମାଜେ ଅସ୍ପୃଶ୍ୟତା ଭବେ ନାହିଁ ।

ଚହଳ ପଶଛ ଏ ମହିମା ତବ ବଲାଙ୍ଗିର ଗଡ ଡେଇଁ
କହେ ନରସିଂହେ ସମ୍ବଲପୁରର ପ୍ରତିଧ୍ୱନୀ ହେଲେ ନେଇ ।)

ଯାତ୍ରୀ ସମାଗମ ଶିବେ-ଶିବରାତ୍ରେ ବଇଶାଖ ପୂର୍ଣ୍ଣିମାରେ
ତବ ଦରଶନେ ଭକତଙ୍କ ମେଳ ହୁଏ ହର୍ଷ ଅନୁମାରେ ।

ଖୋଳ କରତାଳ ନିନାଦ ଉଠଇ ଗିରିଖୋଳ ସେହି ନାଦେ
ମୁଖରତ ତଥି ସହତାଳ ଦେଇ ମିଶେ ଭକ୍ତି ଆହ୍ଲାଦେ ।

ଧନ୍ୟ ନାହୋପଲ ଧନ୍ୟ ସେ ଦୁହୁଲା ଆନ ସନ୍ନିକଟ ଗ୍ରାମ
ବାସୀଙ୍କ ସର୍ବଦା ତବ ଦରଶନେ ହୋଇଛନ୍ତି ଭାଗ୍ୟବାନ ।

କର୍ମ ବନ୍ଧେ ବନ୍ଧା ମୁଁ ପତିତ ପ୍ରଭୁ ! ସଂସାର ଅପାରେ ଭଜି
ଖଡ଼ିଆଳ ଗଡେ ଉଦର ଭରଣେ ଧନ୍ଦ ହୁଏଁ ହରଘଡ଼ି ।

ଏହି ଅପରାଧ ନୁହେ କ୍ଷମଣୀୟ ଦଣ୍ଡ ପ୍ରଭୁ ପାର ଯେତେ
ଏଣିକି ମାଗୁଣୀ ବଳଦଅ ତାହା ସହିବାକୁ ଅନୁବ୍ରତେ ।

ଦୂରେ ଥିଲେ ସୁଦ୍ଧା ତବ ନାମ ମମ ରସନାରେ କରୁ ଖେଳା
ସଂସାର ସାଗର ପାରି ହେବା ପାଇଁ ମିଳୁ ତବ ପଦ ଭେଳା ।

(ବି:ଦ୍ର:- ବନ୍ଧନୀସ୍ଥ ପଦ ଗୁଡ଼କୁ ବାଦ ଦେଇ ମଧ୍ୟ ଗ୍ରହଣ କରାଯାଇପାରେ)



## ଅର୍ଚନା ଭଜନ (ନଂ ୧)

ଶ୍ରୀ ରାମକୃଷ୍ଣ ନିଆଳ

ଭଜମନ ଏ ଭଞ୍ଜନ କଦନ
ଜଳଦ ବରନ ଜଳଜ ବଦନ
ନନ୍ଦର ନନ୍ଦନ ମହାଚନ୍ଦନ ॥ ଭଜମନ ।୧।

କଞ୍ଜନୟନ ଅଞ୍ଜନ ରଞ୍ଜନ
ମରମ ରଞ୍ଜନ ଗରବ ଗଞ୍ଜନ
ଜପ ତପ ଗପ କଥନ, ସରବ, ଅରସ ମନର ରସ ଝରଣ ॥ ।୨।

ଚରଣ କମଳ ଅଧବଳ ଝଳ
ଅଧରର ହସ ଯଶ ବସ ଖଳ
ଭବ ଲଟପଟ ହଟ ନଟବର କରଚନ କର ଏତ ରଚନ ॥ ।୩।

ଖଗବର ତବ ଗରବ ଧନ
ଗଙ୍ଗର ଜନ ପଦର ରଚନ
ମନ ପଦକର ବରନକୁ ବାନ୍ଧ ରାମକୃଷ୍ଣ କଲା ଗୀତ ରଚନ ॥ ।୪।

## ଅଚନା ଭଜନ ( ନଂ ୨ )

ହର ହର ବଚନ ଧର ୨
ରଚନରମନ ... .... ଏ ଭଜନ ଧନ
ଶରଣ ତବ ପୟର......... (ପଦ)

ଗଣର ଜନକ ଯରଗ ଯଦନ
ଜଲ ବବ୍ରଜନ ପରବତ ମନ
ଡମ ଡମ ତବ ଶବଦ ଝର .... ... ।। ୧ ।।
ମରମ ଯପନ ସମକର ମନ
ଡରଛ ଶମନ ଭଜଇ ଭଜନ
ମଞଲ ଅଯଲ ଚରଳ ଗରଳ
ତରବର ହର ହେ ଶଶଧର ହରହର .... ... ।। ୨ ।।

ଗଳପଟ ତବ ଗରଘର ଏକ
ଅମର ଅକ୍ଷର ଚହ୍ନଟ ଚମକ
ଔଷଧ ବଇଦ ଏ ମନର ଡର
ଢୁର ଡାକେ ନିଧାଲ ଛାର ।। ୩ ।।



# ବିପ୍ଳବିନୀ ରୋଶନ୍ ଆରା

ଶ୍ରୀ କିଶୋର ଚନ୍ଦ୍ର ମହାପାତ୍ର

( ଢାକା ବିଶ୍ୱବିଦ୍ୟାଳୟର ପ୍ରଥମ ବାର୍ଷିକ ଛାତ୍ରୀ କୁମାରୀ ରୋଶନ୍ ଆରା ମାର୍ଚ୍ଚ ୨୭ ତାରିଖ ୧୯୭୧ରେ ବାଙ୍ଗଲା ଦେଶ ସ୍ୱାଧୀନତା ସଂଗ୍ରାମରେ ଝାସ ଦେଇ ଜୀବନୋତ୍ସର୍ଗ କରିଥିଲେ-ତାଙ୍କରି ଅମର ସ୍ମୃତି ଉଦ୍ଦେଶ୍ୟରେ )

ମୁକ୍ତି ପ୍ରଦୀପ ଜଳି ଉଠିଥିଲା କୁମାରୀର ଶାନ୍ତ ବୁକେ
ମନର କପୋତି ଛୁଟି ଯାଉଥିଲା ପ୍ରତିବନ୍ଧ ବୁକୁ ଚିରି
ସର୍ବାଙ୍ଗ ତାହାର ଥରି ଉଠିଥିଲା ବଙ୍ଗବନ୍ଧୁ ଗୁରୁ ଡାକେ
ନୟନୁ ନିର୍ଗତ ଅଗ୍ନି ସ୍ଫୁଲିଙ୍ଗ ଆସିବ ନାହିଁ ସେ ଫେରି ।
ଢାକା କଲେଜର ପ୍ରଥମ ବାର୍ଷିକ ଛାତ୍ରୀ ରୋଶନ୍ ଆରା
ଦଳିତ ଲାଞ୍ଛିତ ବଙ୍ଗ ଭୂମିର ମୁକ୍ତି ପିପାସା ନେଇ
ଶହୀଦମାନଙ୍କ ଆତ୍ମବଳରେ ହୋଇଣ ସେ ଆତ୍ମହରା
ଅରାତି ନିଧନେ ବିପ୍ଳବିନୀ ସାଜି ରଣଭୂମେ ଗଲା ଧାଇଁ
ତାମଶାହୀ ସେନା ବର୍ବରତା ତାର ପରଶେ ଜାଳଛି ନିଆଁ
ବଙ୍ଗମାଟିର ବୀରବାଳା ହୋଇ ଏ ସବୁ ସହନ୍ତା କିଆଁ ?
ରଣଚଣ୍ଡୀକୁ ଦେଶୁ ଜାଗ୍ରତ କରି ବିପ୍ଳବେ ଗଲା ମାତି ।

X X X X X

ସମ୍ମୁଖେ ତାହାର ଗର୍ଜନ କରି ଟେଙ୍କ୍ ଆସଇ ଛୁଟି
ବକ୍ଷେ ତାହାର ଯତନରେ ରଖି ବୋମା ସେ ମମତାମୟୀ

ବଳଦାନ ପାଇଁ ଯେବେ ହୁଏ ପର ମୁକ୍ତି ପଥ ଯିବ ଫିଟି
କୋଟିଏ ପ୍ରାଣର ରକ୍ଷା ପାଇଁ ତା ମରଣରେ ଭୟ ନାହିଁ ।
ପଛୁ କିଏ ଡାକେ ରହ ରହ ବାଳା ସମ୍ମୁଖେ 'ଟେଙ୍କ୍' ଆସଇ
ଭାଳ ଅଛି ଯେବେ ଦେଶ ପ୍ରେମ ବହ୍ନି ପଥ କି ହୁଅବ ଆଉ
ଶୁଣି ନ ଶୁଣିଲା ପରି କ୍ଷିପ୍ର ଗତିରେ ଗଲା ସେଥୁ ଧାଇଁ
କହିଗଲା-"ଜୀବନ ମୋ ଯାଉ ପଛେ ଦେଶ ମୋର ରହୁ ।"
ବର୍ବର ସୈନିକ ଦୂରୁଁ ଦେଖିଦେଲା ଆସେ ନାରୀ ଏକ
କ୍ରୁର ହସେ ବାହି ନେଲା ଟେଙ୍କ୍ ଯାନଟିକୁ ଅବଳାର ପାଶ
ଲମ୍ଫ ଦେଲା ଟେଙ୍କ୍ ଆଗେ ମୁଖେ ତାର "ଜୟ ବଙ୍ଗଳା" ଡାକ
ବକ୍ଷସ୍ଥିତ ବୋମା ତାର ଗର୍ଜିଉଠି ଯାନ କଲା ନାଶ ।
ଦେଶ ପ୍ରେମ ପାଗଳନୀ ଯୁଝିଗଲା ତାମସାହି ସଙ୍ଗେ
ମୁକ୍ତି ଯଜ୍ଞେ ବଳିଦେଲା ପରାଣଟି ତାର
ମରିବି ମରିନି ସଅରିଲା ରକତ ତା ବିପ୍ଳବୀର ଅଙ୍ଗେ
ମୁକ୍ତିକାମୀ ହୃଦେ ସ୍ପନ୍ଦନ ଭରିଲା ସ୍ମୃତିଟିକ ତାର ।
ଅଶ୍ରୁ ପୋଛ, ପୋଛ ନୟନରୁ ଅଶ୍ରୁ ହେ ବଙ୍ଗ ଜନନୀ
ବୀରମାତା ତୁମେ ଆଗୋ କନ୍ୟା ତବ ମରି କି ପାରଇ ?
ଜୀବନର ଅଶ୍ରୁ ବିନ୍ଦୁ ଭିଜି ପଡି ହୃଦୟେ ମାନିନୀ
ଦେଖୁଛ ତ ଚତାଗ୍ନି ତା କ୍ରୋଧେ ଆଜ ଅଗତି ଦହଇ ।
ତ୍ୟାଗ ଆଦରଣ ପରନାରୀ ଜୀବନର ମୂଳ
ଅପୂର୍ବ ଏ ବଳଦାନେ ଆଜ ଜନନୀ ମହିମା ବଢେ
"ରୋଶନ୍ ଆରା' ଅନ୍ଧକାର ଦୁନିଆଁକୁ ଆଲୋକିତ କଲା
ଭକ୍ତି ଆବେଗେ କୋଟି ମଥା ତୁମ ଚିତା ତଳେ ଗଡେ ।

**

## * ଅନୁଚିନ୍ତା *

ରାମଭକ୍ତ ପଢ଼ିଆର (କୋମନା)

ବଞ୍ଚିବାର ଅଛି ଫେନେ
ଗଢ଼ ଉଠେ ସପନ ସଉଧ
ଛାତିର କଂକ୍ରୀଟ୍ ଚଟାଣ ତଳେ
ପଞ୍ଚବିଂଶତି ଜୀବଗଣ ରଣରଣ
କହିବାକୁ ଶବ୍ଦମାନେ ଅପାରଗ
ବୁଝେଇବାକୁ ଶବ୍ଦମାନେ ଅସମର୍ଥ
ଶିଖେଇବାକୁ ଶବ୍ଦମାନେ ଶାନ୍ତ
ନିଃସଙ୍ଗ ଶ୍ମଶାନର
ନିର୍ଭର ପ୍ରତିଶ୍ରୁତି ପରେ ବି
ବୟସ ଶୋଉଛି
ପାଣି ଫୋଟକାର ମହଲ ଭିତରେ
ନିର୍ଶ୍ଚିନ୍ତରେ ଆରାମରେ



## - ଅର୍ଚ୍ଚନା -

ଶ୍ରୀ ଚଣ୍ଡି ଚରଣ ବଣି



ଦେଉଳେ ବସି ଦିବସ ନିଶି ପୂଜିଲେ ଭଗବାନ
ପାଇବ ବୋଲି ବଳିତା ଡାଳ ଦେଇ ନୈବେଦ୍ୟ ଦାନ ।୧।

ଭୁରି ଭୋଜନ ଘୃତ ହବନ ସାଞ୍ଜଣ ପୂଜା ଥାଳି
ଶଙ୍ଖ ଘଣ୍ଟର ଆମୋଦେନାଦେ ଜପିଲେ ଧରି ମାଳି । ୨ ।

ମୂରତୀ ଗଲେ କନକ ଦ୍ୱାର ଧୂପ ଚନ୍ଦନ ଦେଲେ
ହୋଇ ପ୍ରଣତ କଲେ ବିନତୀ ଦେବ କି ତହିଁ ମିଳେ ? । ୩ ।

ମହାଭାରତ ସୁଭଗବତ ଆବର ରାମାୟଣ
ନ ପାଳି କର୍ମେ ଉଚ୍ଚ କଣ୍ଠରେ କରିଲେ ନିତି ଗାନ । ୪ ।

ତିଳକ ଚିତା ଅଠି ସ୍ଥାନରେ ଲେପିତ ହୋଇ ଦେହି
ଜନ ସମାଜ ବର୍ଣ୍ଣି ଗୁରୁରେ ପୁରାଣ ଗପ କହି । ୫ ।

ପୁରାଣ ଜ୍ଞାନ ହିତୋପଦେଶ ଲୀଳା ରହସ୍ୟମାନ
କେବଳମୁଖେ ଭଷିଲେ ପେଟେ ମିଳେ କି ମୁକ୍ତି ଦାନ । ୬ ।

ସକଳ ତୀର୍ଥ କରି ଭ୍ରମଣ କଣ୍ଠେ ଲଗାଇ ମାଳି
ଉଚ୍ଚ ଆସନେ ବସି ଆନନ୍ଦେ ଉଚ୍ଚରେ ଦେଇ ତାଳି । ୭ ।

ଜୟ ଶ୍ରୀରାମ ଗୋବିନ୍ଦ ଶ୍ୟାମ ଡାକିଲେ ଦେଖଣାରେ
ତୀର୍ଥ ରଜର ମହିମା ଗାଥା ଶୁଣାଇ ଆନନ୍ଦରେ । ୮ ।

ନ ପାଳି କର୍ମେ କୃଷ୍ଣ ବଚନ କେବଳ ନାମ ଗାନ
କରି କି ଲଭେ ବିଭୁ କରୁଣା ନ କରି ସତ୍ୟକାମ । ୯ ।

ବଶ୍ୱ ଜନକ ବିଶ୍ୱ ପାଳକ ବିଶ୍ୱ ସନ୍ତାନ ତ୍ରାଣେ
ଆଚାଣ୍ଡାଳର ପୂଜା ଘେନନ୍ତି କ୍ଷୁବ୍ଧ ନୁହନ୍ତି ମନେ । ୧୦ ।

ହୃଦ ମନ୍ଦିରେ ବସାଇ ସ୍ଥିରେ ପୂଜ ତା ଆତ୍ମାରାମ
ସତ୍ୟ କର୍ମରେ ଅର୍ଚ୍ଚନା କରି ଚଳା ତୋ କର୍ମଗଣ । ୧୧ ।

କୁରୁକ୍ଷେତ୍ର ଏ କର୍ମଭୂମି ତୋ ରଥ ତୋ ଅରଜୁନ
ଚିନ୍ମୟ କୃଷ୍ଣ ନିଶି ଦିବସେ ରଥେ ତୋ ବିଦ୍ୟମାନ । ୧୨ ।

ପ୍ରଚଣ୍ଡ ଅଶ୍ୱ ପରାୟ ଇନ୍ଦ୍ରିୟ ତୋ ନନ୍ଦଘୋଷ ଦେହି
ବିନା ଲଗାମେ କୁପଥେ ଟାଣି କରିବେ ଧରାଶାୟୀ । ୧୩ ।
ଜ୍ଞାନ ଚାବୁକ ନିୟୋଗି ତହିଁ ଇନ୍ଦ୍ରିୟ ଅଧୀନ କରି
ସଂଯମୀ ବୀର ତୋ କର୍ମ ରଥେ ସତର୍କେ ଥିବୁ ଧରି । ୧୪ ।
ବାସନା ରୂପୀ ଘୋର ମକର ବ୍ୟାଦାନ ମୁଖେ ସ୍ଥିତ
ଲକ୍ଷ୍ୟ ବର୍ତ୍ତୀତ ହେଲେ ହେ ରଥି ହେବୁ ତୁ କବଳିତ । ୧୫ ।
କୁ କର୍ମ କରି ନାମ ଗାୟନେ ଲଭିବୁ ନାହିଁ ଶାନ୍ତି
ସତ୍ କର୍ମ ଏକା ସ୍ୱର୍ଗୀୟ ପଥ ମାନବ ମହାମତୀ । ୧୬ ।
ସୁକର୍ମ ତୋର ଉତ୍ତମ ଗତି ଜ୍ୱଳନ୍ତ ଧର୍ମ ଏହି
ମିଳଇ ଶ୍ରମେ ନିର୍ଭଳା ସତ୍ୟ ସାଧିଲେ ଭବେ ପାଇ । ୧୭ ।
ସ୍ଥିତ କରଇମ ହୃଦୟ ମନ ନିୟୋଗ ହେବୁ ସ୍ଥିର
ଉଦଣ୍ଡ ଇନ୍ଦ୍ରିୟ ଶାନ୍ତ ଉଭବ ନୋହିବ ବ୍ୟଭିଚାର । ୧୮ ।
କର୍ମାନୁସାରେ ଭାଗ୍ୟ ଚକ୍ରର ହୁଅଇ ସୁନିର୍ମାଣ
ସ୍ୱର୍ଗ ନରକ ଗତି ଧାୟକ ଜୀବର କର୍ମଗୁଣ । ୧୯ ।
ଜର୍ମ ସନ୍ୟାସ ଜାଣ ପ୍ରବୀର କର୍ମେ ମିଳଇ ଧର୍ମ
ବାହ୍ୟ ଭଜନେ ଉପଢୌକନେ ମିଳେ ନା ଭଗବାନ । ୨୦ ।
ସାଧିଲେ ଏହି କର୍ତ୍ତବ୍ୟ ପଥେ ଦୃଢ଼ ହୃଦୟେ ଧ୍ୟାୟି
ଏ ଭବାର୍ଣ୍ଣବୁ ତ୍ରିତାପାନଳୁ ଅବଶ୍ୟ ହେବୁ ତ୍ରାହି । ୨୧ ।
କର୍ମ ଯଜ୍ଞ ଏ ଗରୀଷ୍ଠ ଧର୍ମ ସାଧ ସ୍ୱକୀୟ ହିତେ
ରାଷ୍ଟ୍ର ଉନ୍ନତ ହେବ ନିଶ୍ଚିତ ଯିବ ଜୀବନ ସାଥେ । ୨୨ ।



## ✱ ପ୍ରିୟା ✱

ଶ୍ରୀ ନାରାୟଣ ବିଶି

ଝାଇଁ ଝାଇଁ ମାଦଳ ବାଜେ
ଝୁମି ଝୁମି ପୁଲକ ଜାଗେ
ଆସ ଆମେ ଦୁହେଁ ହଜିଯିବା
ମଳୟର ସାଥେ ମିଶି ଯିବା
ଫଗୁଣର ଫୁଲ ସଙ୍ଗେ
ମିଳନ ବଇଁଶୀ ବାଜେ
ଏଇ ମନ କାହିଁକି ନ ବୁଝେ ।୦।

ପ୍ରେମ ପକ୍ଷୀ ଆମେ ଦୁନିଆଁରେ
ଡେଣା ମେଲ ଉଡ଼ିଯିବା ଦୂରେ
ଆଙ୍କି ଦେବି ସୋହାଗ ସିନ୍ଦୁର
ବାହୁ ବନ୍ଧନରେ ଥିବ ମୋର
ହୃଦୟ ଦେଇ ଦେବ ମୋତେ
ପ୍ରଣୟ ହୋଇବ ଗୁପତେ
ପ୍ରୀତିର ଯେ ପୂଜାରୀ ମୁଁ
ଅଭିସାର ଆଜି ସାଜେ ।୧।

ମୁଁ ଯେ ଚାନ୍ଦ ତୁମେ ନୀଳକଇଁ
ଦୂରେ ଥାଇ ଯାଅ ମତେ ଛୁଇଁ
ତୁମେ ଏକ ମଧୁର ଝରଣା
ସରସ ସୁନ୍ଦର ତୁମେ ବିନା

ଆଖିରେ ମନର ତାହାଣୀ
ଜୀବନେ ନ ଥିଲି ମୁଁ ଜାଣି
ତୁମ ନୀଳ ଆଖି ଦୁଇ
କଜ୍ଜ୍ୱଳ ଧାରରେ ଯାଢେ । ୨ ।

ଧୁଳୁ ଧୁଳୁ ଚଇତି ପବନ
ମନେ ଜାଗି ଉଠେ ଶୀହରଣ
ଆହା ତୁମେ ନାହିଁ ପାଶେ ମୋର
ବୀଣାରେ ମୋ ନାହିଁ ଆଉ ସୁର

ତୁମେ କି ଭୁଲିଗଲ ମୋତେ
କରୁଛ ଛଳନା କି ସତେ ?
ଅଭିମାନୀ ହୁଅ ନାହିଁ
ଖୋଜୁଛି ତୁମକୁ ମୁଁ ଯେ । ୩ ।

✱✱

## ଜୀବନର ମୂଳ

ଶ୍ରୀ କ୍ଷୀରସିନ୍ଧୁ ନିଆଲ

( ରାଗ – ଆଷାଢଶୁକ୍ଳ ବାଣୀ )

ସୃଷ୍ଟି ପୂର୍ବେ ବିଭୁ ଶ୍ରୁତି ପ୍ରକାଶ
ସ୍ୱୟମ୍ଭୁ କରେ ଦେଲେ ହୋଇ ତୋଷ ।
ସେ ଜ୍ଞାନ ଲଭି ଦୃଢେ ପରମେଷ୍ଠି
ଦୃଶ୍ୟ ଅଦୃଶ୍ୟ ସର୍ବ କଲେ ସୃଷ୍ଟି

ଜୀବନର ମୂଳ

ଶିକ୍ଷା ଅଟଇ ସଂସାରେ କେବଳ । ୧ ।
ଯେ ଶିକ୍ଷା ପ୍ରାଣୀ ହୃଦେ କିଛି କିଛି
ଅଛି ବହି ଯାକୁ ଯେତେ ଦେଇଛି ।
ସର୍ବ ଶ୍ରେଷ୍ଠ ଯେଣୁ ଅଟନ୍ତି ନର
ଏଣୁ ଲଭିଲେ ସେ ଜ୍ଞାନ ଭଣ୍ଡାର

ଜୀବନର ମୂଳ

ଶିକ୍ଷା ଅଟଇ ସଂସାରେ କେବଳ । ୨ ।
ଶିକ୍ଷା ବଳେ ସଂସାରେ ଗମେ ନର
ଚନ୍ଦ୍ର ମଣ୍ଡଳ ମଙ୍ଗଳ ଗ୍ରହର ।
ସମ୍ବାଦ ବୁଝୁଅଛି ମର୍ତ୍ତେ ବସି
ଶିକ୍ଷା ସାଧନେ ହୁଏ ଦୂରଦର୍ଶୀ ।

ଜୀବନର ମୂଳ

ଶିକ୍ଷା ଅଟଇ ସଂସାରେ କେବଳ । ୩ ।
ଶିକ୍ଷା ବଳେ ସମଗ୍ର ପୃଥିବୀର
ସର୍ବ ସମାଚାର ବୁଝଇ ନର ।
ଶିକ୍ଷା ବଳେ ସୁନ୍ଦର ନୃତ୍ୟ ଗୀତ
ଶ୍ରବଣ କରେ ହୋଇ ଆନନ୍ଦିତ ।

ଜୀବନର ମୂଳ

ଶିକ୍ଷା ଅଟଇ ସଂସାରେ କେବଳ । ୪ ।
ଶିକ୍ଷା ବଳେ ଚୋର ଧରଇ ଶ୍ୱାନ
ଶୁକପିକ ପଢନ୍ତି ରାମ ନାମ ।
କରୀ ପରେ ହରି କରଇ ଲୀଳା
ତା ପରେ ଶ୍ୱାନ ସଙ୍ଗେ ଖେଳେ ପିଲା ।

ଜୀବନର ମୂଳ
ଶିକ୍ଷା ଅଟଇ ସଂସାରେ କେବଳ । ୪ ।

ଶିକ୍ଷା ବଳେ ଶୂଦ୍ର ହୁଏ ବ୍ରାହ୍ମଣ
ଶିକ୍ଷା ବିନେ ବ୍ରାହ୍ମଣ ଶୂଦ୍ରରୁ ହୀନ
ସୁଶିକ୍ଷା ଜୀବନକୁ କରେ ଉଜ୍ଜ୍ୱଳ
କୁଶିକ୍ଷା ଜୀବନର ଅଟେ କାଳ ।
ଜୀବନର ମୂଳ
ଶିକ୍ଷା ଅଟଇ ସଂସାରେ କେବଳ । ୬ ।

ଏଣୁ ସାଧୁ ସଙ୍ଗ କର ସୁମନ
ଆନନ୍ଦେ କର ସୁଶିକ୍ଷା ସାଧନ ।
କାମ କ୍ରୋଧ ଲୋଭ ମୋହକୁ ଜୟ
କରି ଜୀବନ କର ଦୀପ୍ତିମୟ ।
ଜୀବନର ମୂଳ
ଶିକ୍ଷା ଅଟଇ ସଂସାରେ କେବଳ । ୭ ।

ଜନକ ଜନନୀ ସାବଧାନରେ
ସୁଶିକ୍ଷା ଦାନ ଦିଅ ସନ୍ତାନରେ
ଶ୍ରଦ୍ଧା ପ୍ରେମ ଭକ୍ତି ହେଲେ ଜାଗ୍ରତ
ଗୁରୁଜ୍ଞାନେ ଶିକ୍ଷା ହେବ ପ୍ରାପତ ।
ଜୀବନର ମୂଳ
ଶିକ୍ଷା ଅଟଇ ସଂସାରେ କେବଳ ୮ ।

ଶିକ୍ଷା ଅଭାବେ କ୍ଷୀରସିନ୍ଧୁ ହୀନ
ଆବିଳ ସ୍ରୋତେ ଭାସେ ନିଶିଦିନ
ରାମ ନାମ ଭବ ସିନ୍ଧୁ ତରଣୀ

ସର୍ବ ଶିକ୍ଷାର ମୂଳ ନାମ ଖଣି ।
ଜୀବନର ମୂଳ
ଶିକ୍ଷା ଅଟଇ ସଂସାରେ କେବଳ । ୯ ।

## * ସ୍ମରଣିକା *

ଶ୍ରୀ ପଦ୍ମଲୋଚନ ପଣ୍ଡା

ସ୍ୱାର୍ଥତ୍ୟାଗୀ ସତ୍ୟବାଦୀ ହେ ମହାତ୍ମା ଗାନ୍ଧି ।
ସଭ୍ୟତା ମାନବଜାତା ଥିଲ କି ସଂସାର । ୨ ।
ମାନବର ନୈତିକତା ସାତ୍ତ୍ୱିକ ବିସ୍ତର ।
ସ୍ୱର୍ଗୀୟ ବୈଭବ ଯେତେ ଥିଲ ତୁମ୍ଭଠାର । ୨ ।
ବ୍ରାହ୍ମଣ ବା କ୍ଷତ୍ରିୟ ବା ବୈଶ୍ୟ ଶୂଦ୍ରର ।
ମଇତ୍ର, ଅରାତି, ଜ୍ଞାତି, ବନ୍ଧୁ ସହୋଦର । ୩ ।
କଉଣସି ସଂପ୍ରଦାୟ ଜାତି କୁଳାସ୍ପଦ ।
ପରିଚୟ ନେବା ପ୍ରଥା ନ ଥିଲ ତୁମ୍ଭର । ୪ ।
ମଣୁଥିଲ ପୁଷ୍ଟ ଲୋହ ଦରିଦ୍ର ଧନୀକ ।
ପ୍ରେମ, ପୁଣ୍ୟ ସମ୍ମାନର ଓଜନରେ ଏକ । ୫ ।
ହୃଦ ଉଦ୍ୟାନରେ ତୁମ୍ଭ ନ ଥିଲ ଜଗାଇ ।
ପରପର ଭେଦାଭେଦ ଭବ ଗୁଛ ଯାଇ । ୬ ।
ନ ଲଗଇ ପଙ୍କ ଯଥା ମଲ୍ଲୀ ଲତା ଅଙ୍ଗେ ।
ନ ଥିଲ କଳଙ୍କ ତଥା ତୁମ୍ଭର ଶ୍ରୀଅଙ୍ଗେ । ୭ ।
ଦୟା, ବିନୟ, ଅହିଂସା, କ୍ଷମା, ଶାନ୍ତ, ସତ ।
ଉପକାର, ସହିଷ୍ଣୁତା ପୁଣି ହରି ଭକ୍ତ । ୮ ।

ସୁବିବେକ, ସୁଗୁଣିକ, ଭବୁକ, ଧାର୍ମିକ ।
ନିରପେକ୍ଷ, କାର୍ଯ୍ୟଦକ୍ଷ, ନିର୍ଭୀକ, ଦାମ୍ଭିକ । ୯ ।

ବାକ୍ୟାବଳରେ ତୁମ୍ଭର ମାଧୁର୍ଯ୍ୟ ଜଳଡ ।
ନିହିତ ଥାଇ ଶ୍ରୋତାଙ୍କୁ କରିଛି ମୋହିତ । ୧୦ ।

ଏହି ହେତୁ ପରିଚୟ ପାଇଲା ଜଗତ ।
ମହା ପୁରୁଷରେ ତୁମ୍ଭେ ହୋଇଲେ ଖ୍ୟାତ । ୧୧ ।

ସତ୍ୟ ଉପଦେଶ ଦେଇଥିଲ କାହ କାହ ।
ଶିଖାଇଲ ରାଜନୀତି ତାରକ ମନ୍ତ୍ରାଦି । ୧୨ ।

କିନ୍ତୁ ହୃଦ ପିଞ୍ଜରରେ ନୀତିପକ୍ଷୀ କାହିଁ ।
ରଖି ପାରି ନ ପାରୁଛୁଁ ଆଳସ୍ୟରେ ଥାଇ । ୧୩ ।

ତାଣୁଁ ସ୍ୱରଗରେ ସୁଦ୍ଧା ନ ଥାଇ ନିଶ୍ଚିନ୍ତେ ।
କରୁଥିବ ଦେବାଗ୍ରତେ ଦାବୀ ଆମ୍ଭ ହିତେ । ୧୪ ।

ରକ୍ଷୁଁଥିବ ଶ୍ରୀହରିଙ୍କୁ ଲୋତକ ଲୋଚନେ ।
କହୁଥିବ ଜଗତର କଲ୍ୟାଣ କାରଣେ । ୧୫ ।

ସୁଦୃଷ୍ଟି ସକାଶେ ଭୂମଣ୍ଡଳେ ଆଖଣ୍ଡଳେ ।
କରୁଥିବ ଅନୁରୋଧ ସଙ୍ଗତେ ଗୋଖଲେ । ୧୬ ।

ଘେନି ଦଳବଳ ଗମୁଥିବ ବନ୍ଧୁଆଳେ ।
ପ୍ରତିନିଧି ରୂପେ ବାଛି ଲାଲ ବାଳ ପାଳ । ୧୭ ।

ସ୍ୱାଧୀନତା ଯଜ୍ଞେ ବନ୍ଦୀ ହୋଇ ସ୍ୱର୍ଗଆଳ ।
ଗଲେ ଯେ କି କରି ଦେଶ ମାତା ମୁଖୋଜ୍ଜ୍ୱଳ । ୧୮ ।

ପରତେ ହେଉଛି ଫେରି ଆସି ମରତରେ ।
କରୁଛବ ସଙ୍କଳପ ଜଗତ ହିତରେ । ୧୯ ।

ଯେ ଭଳି ମାନବ ଯିବେ ସେ ଭଳ ପଥରେ ।
ସ୍ୱରଗରେ ଥାଉ ଅବା ଥାଉ ମରତରେ ।୨୦।

**

## ଏକଇ ବୃକ୍ଷେ ଶତପକ୍ଷୀ

ଶ୍ରୀ ଅଭୟ ଚରଣ ଚଲନ

ଭଗବତ ଗ୍ରନ୍ଥେ ପଢ଼ିଲି ବୃତ୍ତାନ୍ତ
ଏକ ବୃକ୍ଷେ ବେନି ସୁପର୍ଣ୍ଣ ଦୃଷ୍ଟାନ୍ତ ।
ଭଳ ଭଳି ମର୍ମ ନ ପାଇଲି ଅନ୍ତ
ମାୟା ନିର୍ବିକାର ଅଟଇ କେମନ୍ତ ?
ପ୍ରକୃତି ନିର୍ମାଣ ମାନବ ଜୀବନ
ଲାଗିଅଛି କ୍ରମ ଉତ୍ଥାନ ପତନ ।
ସଞ୍ଚିତ ପ୍ରକୃତି ବେଳକାଳ ଭଣ୍ଡି
ମହାଜ୍ଞାନୀ ଜନେ ଦେଇଥାଏ ଭଣ୍ଡି ।
ଜାଣେ କି ଶିଉଳ ବଟଦ୍ରୁମ କଥା
ମୋ ପକ୍ଷେ ଏ ଜ୍ଞାନ ଅଟଇ ତ ତଥା ।
ବୁଲୁଥିଲି ଦିନେ ପ୍ରଭାତ ଭ୍ରମଣେ
ଥିଲେ ଜଣେ ବନ୍ଧୁ ସେ ଦିନ ଗହଣେ ।
ସମ୍ମୁଖେ ଦେଖିଲି ପବିତ୍ର ପିପ୍ପଳ
କର୍ଣ୍ଣେ ମୋ ବାଜିବା ମଧୁର କାକଳି ।
ଅନାଇ ଦେଖିଲି ହରଡ ଶତେକ
ଫଳ ଭୋଜ୍ୟ ଆଶେ ଚେଷ୍ଟିତ ପ୍ରତ୍ୟେକ ।

କୁତୂହଳ ମନେ ରହି ଏକ ଲକ୍ଷ୍ୟ
ଚୀର ଯୋଗ୍ୟା ଫଳ ଦେଖିଲି ଏ ବୃକ୍ଷେ ।
ଥୋଡେ ପକ୍ଷୀ ମତ୍ତ ନିଜ ବାହୁ ବଳେ
ପ୍ରଭାବ ବସ୍ତାରିବନ୍ତ ସବୁ ଫଳେ ।
ମାଡ଼ି ଦଳି ନଷ୍ଟ କରୁଛନ୍ତି ସିନା
ଅନ୍ୟ ପାଇଁ ନାହିଁ ଟିକିଏ ଶୋଚନା ।
ବାକୀ ପକ୍ଷୀ ଯାକ ଦୁର୍ବଳ ଦଳର
ବଳବାନ ଦେଖି ହୁଅନ୍ତି ଭୟଭୀତ ।
ତଳଡାଳେ ଥିବା କଷି ଫଳ ଖାଇ
ଜୀବନ ବଞ୍ଚାନ୍ତି ପ୍ରକୃତି ମେଣ୍ଟାଇ ।
ବେଳେ ବେଳେ ପକ୍ୱ ଫଳ ରସ ଆଶେ
ସତର୍କେ ବସନ୍ତି ଯାଇ ଅନ୍ୟ ପାଶେ ।
ଜାତି ପ୍ରେମଭାବ ନ ରଖି ମନରେ
ତଡନ୍ତି ଦୁର୍ବଳେ ପ୍ରହାରି ଚଞ୍ଚୁରେ ।
ନିଜ ପୂର୍ବସ୍ଥାନେ ବସନ୍ତି ବିଜଳେ
ପ୍ରତିବାଦ ପନ୍ଥା ଦଣ୍ଟୁ ନି ଦୁର୍ବଳେ ।
ଚମକି କହିଲି ବିଧି ବିଡମ୍ବନା
ଏ ପକ୍ଷୀ ସେ ପକ୍ଷୀ କେମନ୍ତ ସୃଜନା ?
ଚକ୍ଷୁକୁ କହିଲି ଦେଖ ଏହି ରୀତି
ଦୁର୍ବଳର ସଦା ସବଳରେ ଭୀତି ।
ନିର୍ବାକ ଚକ୍ଷୁ ନ କହିଲେ କିଛି
ଦେଖିଲି ନେତ୍ରରୁ ଲୋତକ ଝରୁଛି ।
ମୋ ହୃଦୟ କିନ୍ତୁ ପାଷାଣେ ଗଠିତ
ଅନ୍ୟ ଦୁଃଖେ କେବେ ନ ହୁଏ ଦ୍ରବିତ ।

ଭଗବତ ଧର୍ମ ଗଳ୍ପ କେଉଁ ଆବେ
ପଢ଼ିଅଛି ମୁହିଁ ଅନେକ ଉହାତେ ।

-✽-

## ଅନ୍ତିମ ବିଦାୟ

ଇରଫାନ୍ ମହମ୍ମଦ

ପ୍ରିୟତମା ! ଥିବ ଯଦି ମୃତ୍ୟୁବେଳେ ଗ୍ରାମେ
ଆସିବ ନିଶ୍ଚୟ ଲୁହ ଲୁଗ୍ଭଇ ନୟନେ ।
ପଡ଼ିଲେ ମୋ ମୃତ ଦେହ ପରେ ତୁମ ଛାଇ
ବାହାରିବ ସ୍ୱତଃ ହସ୍ତ କଂପନେ ନ ରହି ॥
ପଳାଇବେ କୁଟୁମ୍ବେ ମୋ ଭୂତପ୍ରେତ ଭୟେ
ଜାଣେ, ତୁମେ ଏକାକିନୀ ରହିବ ନିର୍ଭୟେ ।
ଦେଖିବ କଫନ ଖୋଲି ଆସ୍ୟ ଝଲକରେ
ଏଣିବ ତୁମର ବାଲ୍ୟ ଛବି ମୋ ଚକ୍ଷୁରେ ॥
ଖେଳିଯିବ କ୍ଷଣକରେ 'ସେ ଦିନ' ସ୍ମୃତିରେ
"ଆମରଣ ଭିନ୍ନ ନୋହି ରହିବୁଁ ସଂସାରେ ।
ପଣ କରଥିଲୁଁ ଦୁହେଁ ଗତ ଜୀବନରେ"
କୃତଘ୍ନ ନୁହେଁ, ଜାଣିବ କେଣିକି ସ୍ୱାଗତରେ ॥
ଅପେକ୍ଷି ନାହିଁ ତୁମକୁ କେବେ ଜୀବନରେ
ତେବେ ଗୋ ବିଦାୟ ଦବୁଁ କିପରି ଅଙ୍ଗରେ ?

-✽-

# କୋଣାର୍କ କହେ

ଶ୍ରୀ ବାବୁଲାଲ ଅଗ୍ରୱାଲ

ଚନ୍ଦ୍ରଭାଗାର ନଈକୂଳ
ମନ୍ଦ ମନ୍ଦ ସମୀର
ଛିଡା ହୋଇ, ପଥରର ମୂରତିଟିଏ
ଇଙ୍ଗିତ କରି ନିଜର ସେହି ଭଗ୍ନାବଶେଷକୁ
କହିଯାଏ, ବନ୍ଧୁ ମୋର ।
ଅମର ବି ମର ହେବ..........ସମୟ ଆସୁଛି ।
ଆଉ ଛାଡଯାଏ ମନରେ ଏହି ପ୍ରଶ୍ନ .........
କିପରି ? ...... କାହିଁକି ?
ଠିକ୍ ଏତିକି ବେଳେ ଗାଇ ଉଠେ
ଅମର ଶିଳ୍ପୀର ମରଣର ଗାଥା
କୋଣାର୍କର ସେହି ଭଗ୍ନସ୍ତୂପ
ଦୁଃଖ ଲାଗେ ଆଜିବି ଏହି ପଙ୍ଗୁ ଶାସନ
କି ଅତ୍ୟାଚାର, ବୋଧ ନିଷ୍ଠୁର ଇଂରେଜ.........
ଅଭିନୟ କରେ ଏହି କୋଣାର୍କ
ବାଜି ରଉତର ଭୂମିକାରେ ............
ଗୋଟିଏ ରକ୍ତ ବଳିଦାନରେ ସହସ୍ରର ରକ୍ଷା
ଏକ ଚେତନାର ଉତ୍ସ..... ।



✱✱

